ଚୌଧୁରୀ ୰ ଶ୍ୟାମଚରଣ ଦାସଙ୍କ ବିରଚିତ

# ଅଧ୍ୟାତ୍ମ ରାମାୟଣ ।

## ( ବାଳକାଣ୍ଡ )



ଚୌଧୁରୀ ଶ୍ରୀ ପଦ୍ମଚରଣ ଦାସଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।

କଟକ, ଚନ୍ଦ୍ରୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।



Printed by H. K. Das,
Chandrodaya Press,
Cuttack,
1926

ମୂଲ୍ୟ ଠ ୦ । ଗ୍ନୃରଅଣା ମାତ୍ର ।

# ଅଧ୍ୟାତ୍ମ ରାମାୟଣ ।

## ବାଲକାଣ୍ଡ ।

ସକଳସୁଖ ରଘୁବଂଶତିଲକଂ କୌଶଲ୍ୟା ହୃଦୟନନ୍ଦନୋ ରାମ ।
ଦଶବଦନ ନିଧନକାରୀ ଦାଶରଥି ପୁଣ୍ଡରୀକାକ୍ଷ ॥

ସ୍ୱସ୍ତି ଦେବ ଗଣପତି । ତୁମ୍ଭ ପାଦରେ ମୋ ବିନତି ॥
ଶଇଳସୁତାଙ୍କର ସୁତ । ପାଶଅଙ୍କୁଶ ବେନି ହସ୍ତ ॥
ବାମନରୂପ ଲମ୍ବୋଦର । ପୃଥୁଲ ଅଟେ ଦନ୍ତ ତୋର ॥
ଅଶେଷ ମୋର ବିଘ୍ନମାନ । ଖଣ୍ଡିବ ଦେବ ଗଜାନନ ॥
ନମଇ ପ୍ରଭୁ ଚକ୍ରଧର । ମହିମା ତୁମ୍ଭର ଅପାର ॥
ଅନାଦି ପ୍ରଭୁ ନିରଞ୍ଜନ । ସଚ୍ଚିଦାନନ୍ଦ ସନାତନ ॥
ତୁମ୍ଭେ ପ୍ରଭୁ ସଦାନନ୍ଦ । ପୂର୍ଣ୍ଣବ୍ରହ୍ମ ତୁ ଅନନ୍ଦ ॥
ବେଦେ ମହିମା ବର୍ଣ୍ଣିଛନ୍ତି । ବ୍ରହ୍ମ ସେବାନ୍ତ, କହନ୍ତି ॥
ପରମ ଆତ୍ମଜ୍ଞାନୀଗଣ । ଦିବ୍ୟାନ୍ତ ବେଦାନ୍ତ ସମ୍ପୂର୍ଣ୍ଣ ॥
ତୁହି ଶୈବଙ୍କ ତ୍ରିଅମ୍ବକ । କର୍ତ୍ତା ବୋଲନ୍ତି ନୈୟାୟିକ ।୧୦।
ତୋଠାରୁ ଏ ବିଶ୍ୱ ସଂସାର । ସମ୍ଭୂତ ଚତୁର୍ଦ୍ଦଶ ପୁର ॥
ତୁ ପ୍ରଭୁ ବ୍ରହ୍ମାଣ୍ଡ କରତା । ଜୀବଗଣଙ୍କ ଅନ୍ତରାତ୍ମା ॥
ଅନାଦି ଶୂନ୍ୟ ତୁ ଅବ୍ୟକ୍ତ । ବଚନ ମନରୁ ଅତୀତ ॥
ତୁ ପ୍ରଭୁ ପୁରୁଷ ପ୍ରଧାନ । ତୁହି ବିଶ୍ୱ ନାରାୟଣ ॥
ବ୍ରହ୍ମଲୋକରେ ତୋର ଶିର । ଚରଣ ଅଟଇ ପାତାଳ ॥
ବ୍ରହ୍ମାଣ୍ଡ କୋଟି କୋଟି ହୋଇ । ତୋ ଲୋମକୂପେ ଛନ୍ତି ରହି ॥
ଅଦ୍ଭୁତ ରୂପ ଭୟଙ୍କର । ବ୍ରହ୍ମାଣ୍ଡ ମୂର୍ତ୍ତି କଳେବର ॥
ତୁ ପୁଣି ଶେଷ ଦେବ ହୋଇ । ଅନନ୍ତରୂପେ ଅଛୁ ରହି ॥

ସେହି ତୁ ପ୍ରଭୁ ଶେଷ ଦେବ । ମହିମା କେ ବର୍ଣ୍ଣି ପାରିବ ॥
ସହସ୍ର ମୁଖ ଗ୍ରୀବା ଶିର । ସହସ୍ରେ ପାଣି ପାଦ ତୋର ।୨୦।
ସହସ୍ର ନାସିକା ତୋହର । ସହସ୍ର ଶ୍ରବଣ ଉଦର ॥
ସହସ୍ର ଚକ୍ଷୁ ଉପୃଙ୍କର । ସହସ୍ର ପାଦ ବଳଧର ॥
ତୁହି ଯେ ପ୍ରଭୁ ଗଦାଧର । କ୍ଷୀରାବ୍ଧି ମଧ୍ୟରେ ତୋହର ॥
ବୈକୁଣ୍ଠ ସ୍ଥାନ ବିଦ୍ୟମାନ । ତହିଁ ତୋ ଅନନ୍ତଶୟନ ॥
କୋଟି ଯେ ସୂର୍ଯ୍ୟ ଜିଣି ତେଜ । ସୁନ୍ଦର ଶୋଭେ ଚତୁର୍ଭୁଜ ॥
ବର୍ଣ୍ଣ ତୋ ଇନ୍ଦ୍ର ନୀଳମଣି । ଜିଣି ଦଶଇ-ତେଜ ପୁଣି ॥
ଶଙ୍ଖ ନଳିନ ଚକ୍ର ଗଦା । ଶ୍ରୀକରେ ସୁନ୍ଦର ସର୍ବଦା ॥
ପୀତବସନ ପରିଧାନ । ଶ୍ରୀବତ୍ସ ବକ୍ଷସ୍ଥଳେ ଚିହ୍ନ ॥
ମସ୍ତକେ କିରୀଟ ଭୂଷଣ । କରେ ସୁନ୍ଦର ସୁକଙ୍କଣ ॥
ହୃଦେ କୌସ୍ତୁଭ ବନମାଳ । ଶ୍ରବଣେ ମକର କୁଣ୍ଡଳ ।୩୦।
କିଙ୍କିଣୀ କଟୀସୂତ୍ର ପୁଣି । ପାଦେ ନୂପୁର ରୁଣୁଝୁଣି ॥
କମଳା ସନ୍ୱେଗ ହୁନ । ପାଦ ସେବାରେ ଛନ୍ତି ରହି ॥
ପାଦପଦ୍ମରେ ଅଷ୍ଟାଦଶ । ତୀର୍ଥ ହୋଇଛି ସୁପ୍ରକାଶ ॥
ଶେ ଭକ୍ତ ନାହିଁ ପଠାନ୍ତର । ମୁଁ କି ବର୍ଣ୍ଣିବ ମୂଢ଼ ନର ॥
ସନକ ଆଦି ମୁନିମାନେ । ସେବାରେ ଥାନ୍ତି ଅନୁକ୍ଷଣେ ॥
ସେହି ତୁ ପ୍ରଭୁ ଲକ୍ଷ୍ମୀପତି । ଗୃର ବହୁରେ ଲୀଳାମୂର୍ତ୍ତି ॥
ଶ୍ରୀବାସୁଦେବ ସଙ୍କର୍ଷଣ । ପ୍ରଦ୍ୟୁମ୍ନ ଅନିରୁଦ୍ଧ ପୁଣ ॥
ଶିବ ତୋହର ଆତ୍ମା ହୋଇ । ସବିତା ଚକ୍ଷୁ ରୂପେ ରହି ॥
ଜ୍ଞାନ ଗଣେଶ ମାୟାଶକ୍ତି । କ୍ରୀଡ଼ାର୍ଥେ ଧରୁ ନାନା ମୂର୍ତ୍ତି ॥
ତୁ ପ୍ରଭୁ ବ୍ରହ୍ମ ରୂପେ ରହି । ମାୟାରେ ଖେଳୁ ଲିପ୍ତ ନୋହି ॥
ପଦ୍ମପତ୍ରରେ ଯେସନେ ଜଳ । ନ ଲାଗେ ମାୟା ଯେ ପ୍ରକାର ॥
ନାଭି କମଳୁ ବ୍ରହ୍ମା ନାତି । ସେ କଲେ ସଂସାର ସମୂହ ॥
ପାଳନ କାରି ନିଜେ ହୋଇ । ରୁଦ୍ର ରୂପରେ ନାଶୁ ତୁହି ॥

ପର ଆପଣା ଭେଦ ନାହିଁ । ସମାନ ଦେଖୁ ସର୍ବ ଠାଇଁ ॥
ଯେ ପ୍ରାଣି ଯେ ରୂପେ ସେବଇ । ସେବାନୁସାରେ ଫଳ ନେଇ ॥
କର୍ମ ବାସନା ମନେ ଜୀବ । ଭୋଗ କରଇ ଶୁଭାଶୁଭ ॥
ସଂସାର ତୁମ୍ଭ ଖେଳଘର । ସର୍ଜନା କରଉଛ ସକଳ ॥
ସର୍ବ ଜୀବଙ୍କ ପିତାମାତା । ତୁମ୍ଭେ ଯେ ସର୍ବ ବୁଦ୍ଧିଦାତା ॥
ସଂସାରେ ଯେତେ ବ୍ୟବହାର । ତୁମ୍ଭେ ସର୍ବତ୍ର ଚକ୍ରଧର ॥
ଆପଣା ସୁଖେ ଥାପେ ରହି । କଳ୍ପଦ୍ରୁମର ପ୍ରାପ୍ତ ହୋଇ ।୫୦।
ତୁମ୍ଭେ ପ୍ରଭୁ ହୃଷିକେଶ । ହୋଇଲୁ ଅବତାର ଦଶ ॥
ମତ୍ସ୍ୟ କଚ୍ଛପ ନରସିଂହ । ବାମନ ଶ୍ରୀରାମ ବରାହ ॥
ତୁହି ସେ କଳ୍କୀ ପର୍ଶୁରାମ । ତୁହି ସେ ବୁଦ୍ଧ ବଳରାମ ॥
ପରମ ଆତ୍ମା ଯୋଗେଶ୍ୱର । ବ୍ରହ୍ମା ଶଙ୍କରେ ଅଂଶୋତର ॥
ତୋହର ମହିମା ଅଗାଧ । କିବା ବର୍ଣ୍ଣିବି ମୁ ନିର୍ବୋଧ ॥
ସାଷ୍ଟାଙ୍ଗ ନମସ୍କାର ହୋଇ । ସର୍ବାପରାଧ କ୍ଷମା କହିଁ ॥
ସରସ୍ୱତୀଙ୍କୁ ଆଜ୍ଞାଦେଲେ । ଯେ ଅବା ମୋ କଣ୍ଠେ ବସିଲେ ॥
ମୋହର ମନର କାମନା । ପୂର୍ଣ୍ଣ କରିବେ ପଦ୍ମାସନା ॥
ଆଉ ଯେ ପ୍ରାର୍ଥନା ବିଶେଷ । ଶେଷରେ ହୋଇବ ପ୍ରକାଶ ॥
କୃଷ୍ଣତ ଅନୁଗ୍ରହ ହେଲେ । ଏଥାକୁ ନିସ୍ତରିବି ଭଲେ ।୬୦।
ଦୀନବାନ୍ଧବ ପ୍ରଭୁ ହରି । ତମଚକ୍ରକୁ ନାଶକରି ॥
କମଳାନନ୍ଦକୁ ବିସ୍ତାରି । ହରିବେ ଛଳ ନାମ ଧରି ॥
ଭୁବନଚତୁଷ୍ଟ ଅଗ୍ରତର । ସ୍ତୁତ ହୋଇଛନ୍ତି ଯୋଡ଼ିକର ॥
ବୈକୁଣ୍ଠ ଯକ୍ଷ ଲୋକମାନ । ତୁଷ୍ଟି କରନ୍ତି ଅନୁକ୍ଷଣ ॥
ଯାର ମଣ୍ଡଳ ଅଖଣ୍ଡିତ । ତରଣି ରୂପରେ ବାହିତ ॥
ଅନନ୍ତ ଅଙ୍ଗର ବିହାର । ନିଶାଚରଙ୍କ ଦର୍ପହାରୀ ॥
ଯେ କରେ ଚରଣ ଆଶ୍ରିତ । ସ୍ୱମନ ସେବା କରେ ନିତ୍ୟ ॥
ବିଭାବରେ କ୍ରୀଡ଼ାକଲେ । ଶିଶୁ ରୋହିତ ମୂର୍ତ୍ତି ଧରେ ॥

ଏଠାରେ ଅଠପଦ ଗୀତ । ବେଦ ଅର୍ଥରେ ପ୍ରକାଶିତ ॥
ପ୍ରଥମ ପକ୍ଷ ଚକ୍ରଧର । ଅପର ପକ୍ଷ ହଳାଧର ॥
ଯେ ହର ବ୍ରହ୍ମାଣ୍ଡ କରତା । ଅଣ୍ଡେ ତେ କଇବଲ୍ୟ ଦାତା ॥
ଗ୍ରନ୍ଥଆଦ୍ୟରେ ଏଣୁ ମୋର । ସ୍ତୁତିକରେ ମୁଁ ଯୋଡ଼ିକର ॥
ସାକ୍ଷାତେ ଯୋଡ଼ି ବେନିକର । ପ୍ରଣାମ କରେ ବାର ବାର ॥
ଯାଠାରୁ ବଂଶ ଉତପତ୍ତି । ସେ ସୂର୍ଯ୍ୟେ କରେ ମୁଁ ସ୍ତୁତି ॥
ଯାହାଙ୍କ ମଣ୍ଡଳରେ ପୁଣ । ଅଛନ୍ତି ବ୍ରହ୍ମା ନାରାୟଣ ॥
ସେ ନାରାୟଣ ପ୍ରଭୁ ମୋର । ନାଶୁ ଅଜ୍ଞାନ ଅନ୍ଧକାର ॥
ଗିରିରେ ଉଦେ ହୋଇ ପୁଣ । ପାପ ମୋ କରନ୍ତୁ ଦହନ ॥
ତାହାଙ୍କୁ କରଇଁ ପ୍ରଣାମ । ମୋ ବାଞ୍ଛା କରନ୍ତୁ ପୂରଣ ॥
ଶ୍ରୀବଳଦେବଙ୍କର ଶୋଭା । ଚନ୍ଦ୍ରମାପ୍ରାୟେ ଯାର ଆଭା ॥
ସପତଫଣି ମସ୍ତକର । ରହି ଅଛନ୍ତି ନିରନ୍ତର ॥
ତୃତୀୟ ଲକ୍ଷଣ ତାଙ୍କର । ହଳ ମୂଷଳ ଧରି କର ॥
ରୋହିଣୀଦେବୀଙ୍କ ନନ୍ଦନ । ସେବା କରନ୍ତି ଗୋପିଗଣ ॥
ବାସୁଦେବଙ୍କ ଅଗ୍ର ଜାତ । ରେବତୀ ଦେବୀ ପ୍ରାଣନାଥ ॥
ପରିଧାନ ଯେ ନୀଳଚେଲ । ଶ୍ରବଣେ ମକରକୁଣ୍ଡଳ ॥
ଅନ୍ତ ନାହିଁ ଯେ ତାହାଙ୍କର । ଏଣୁ ଅନନ୍ତ ନାମ ଯାର ॥
ତ୍ରିଭୁବନେ ଯାର ବଳ । ସର୍ବସିଦ୍ଧିଙ୍କ ଦାତା ପୁଣ ॥
ତାଙ୍କର ବାସୁଦେବ ମନ୍ତ୍ର । ସେ ମୋତ ସମ୍ପଦ ସର୍ବତ୍ର ॥
ଯେ ପ୍ରଭୁ ଚରଣ କମଳେ । ଶରଣ ମୁହିଁ ସଦାକାଳେ ॥
ତାହାଙ୍କୁ କରଇ ପ୍ରଣତି । ତାଙ୍କ ବିନା ମୋ ନାହିଁ ଗତି ॥
ତାଙ୍କ ପାଦରେ ନମସ୍କାର । କରଇ ମୁହିଁ ବାର ବାର ॥
ରଘୁବଂଶରେ ଜନମନ । କୌଶଲ୍ୟାହୃଦୟ ନନ୍ଦନ ॥
ଶ୍ରୀରାମଚନ୍ଦ୍ର ଅବତାର । ଦଶ ବଦନ ପ୍ରାଣ ହର ॥
ଅବର ଜାନକୀ ଲକ୍ଷ୍ମଣ । ଭରତ ଶତ୍ରୁଘନ ପୁଣ ॥

ଚତୁର ଭ୍ରାତା ସୀତା ସଙ୍ଗ । ପାଦେ ମୋ ଅସଂଖ୍ୟ ପ୍ରଣତ ॥
ସମ୍ବାଦ ପାର୍ବତୀ ଶଙ୍କର । କହୁଅଛନ୍ତି ବେଦବର ॥
ମସ୍ତକେ ଚନ୍ଦ୍ର ତ୍ରିନୟନ । ହସ୍ତରେ ତ୍ରିଶୂଳ ଧାରଣ ॥
ତାହାଙ୍କୁ କରଇ ପ୍ରଣତ । ଯେ ମୋର ନାଶନ୍ତି ଦୁର୍ଗତ ॥
ସେ ଉମାଶଙ୍କର ପଦରେ । ଶରଣ ମୋର ଜନ୍ମାନ୍ତରେ ॥
ଏବଂ ତାହାଙ୍କ ପାଦେ ମୋର । ପ୍ରଣାମ କରେ ଯୋଡ଼ିକର ।୧୦।
ନମନ୍ତେ ମାତ ଭଗବତୀ । ସର୍ବ ଲୋକରେ ତୁ ଭାରତୀ ॥
ପଦ୍ମରେ ତୋ ଆସନ । ଶୁକ୍ଳ ବସ୍ତ୍ର ପରିଧାନ ॥
କୁନ୍ଦପୁଷ୍ପର ପ୍ରାୟ କାନ୍ତି । ହସ୍ତରେ ବୀଣା ବେଦ ପୋଥି ॥
ତୋହର ଅବ୍ଜପ୍ରାୟ ଚରଣ । ପଶିଲି ଏ ଯେନ ଶରଣ ॥
ମୁଁ ଅଟେ ହୃସ୍ୱଜ୍ଞ ନର । ତୁ ଲଙ୍ଘିବାକୁ ଇଚ୍ଛା ମୋର ॥
କ୍ଷୀରସାଗର ଅନ୍ତିବାରେ । ମନ ବଳୁଛି ଅନବାରେ ॥
ମୁଁ ମୂଢ ପରମାଣୁ ପର । ମନର ପକାଇବ ଧର ॥
ମୋ ମନ୍ଦମତିର ବଚନ । ହସା କହିବେ ସଜ୍ଜନର ॥
ଏ ବଡ଼ ଅଭଗ୍ନ ଅଟଇ । ତୁ ମାତ କର ମୋତେ ଥାଇ ॥
ତୋ କୃପା ମାତ ଯେବେ ହେବ । ଜଡ଼ହିଁ ସୁଶାସ୍ତ୍ର କହିବ । ୧୧୦।
ତୁ ମାତ କଣ୍ଠରେ ବସିଲେ । ପଦ ସେ ଦୃଶ୍ୟ ହେବ ଭଲେ ॥
ତୋ ଦୟା ମୋତେ ଯେବେ ହେବ । ନବାକ୍ଷରରେ ଗୀତ ହେବ ॥
ବ୍ୟାସ ବାଲ୍ମୀକି ପେ ଅଗସ୍ତି । ସୁତୀକ୍ଷ୍ଣ ସରଭଙ୍ଗ ଅତ୍ରି ॥
ବଶିଷ୍ଠ ବିଶ୍ୱାମିତ୍ର ଆଦି । ତାଙ୍କ ପାଦରେ ମୁହିଁ ବନ୍ଦି ॥
ଶ୍ରୀରାମଚନ୍ଦ୍ରଙ୍କର ଭକ୍ତ । ମହାବୀର ଯେ ବାଟପୁତ୍ର ॥
ବଇଦେହୀଙ୍କ ତାପ ହାର । ଦୁଷ୍ଟ ରାକ୍ଷସ ଅନ୍ତକାର ॥
ହୃଦଅବ୍ଜରେ ତାଙ୍କୁ ମୋର । କରଇ ଶତ ନମସ୍କାର ॥
ଯେବେ କହିବି ଗ୍ରନ୍ଥ କଥା । ଶୁଣିଲେ ଖଣ୍ଡେ ଭବ ବ୍ୟଥା ॥
ଅଧ୍ୟାତ୍ମ ବୋଲି ରାମାୟଣ । ନବାକ୍ଷରରେ ଯେ ବର୍ଣ୍ଣନ ॥

ମନୁଷ୍ୟ ନିସ୍ତାରଣ ବାଣୀ । ଯାହା କହିଲେ ଶୂଳପାଣି ॥
ସେ କଥା ପ୍ରବନ୍ଧେ ପ୍ରକାଶ । କହେ ପ୍ରଭୁର ଅନୁଦାସ ॥
ଯେମାନେ ପଢ଼ିବେ ଶୁଣିବେ । ସଂସାର ଦୁଃଖରୁ ତରିବେ ॥
ମାଗେ ଶରଣ ଦୀନହୀନ । ପ୍ରଣତି କରେ ଶ୍ରୀଚରଣ । ୧୬୩ ।

---

ରାମଂ ଲକ୍ଷ୍ମଣ ପୂର୍ବଜଂ ରଘୁବରଂ ସୀତା ପତି ସୁନ୍ଦରଂ ।
କାକୁତ୍ସ୍ଥଂ କରୁଣାମୟଂ ଗୁଣନିଧି ବିପ୍ରପ୍ରିୟଂ ଧାର୍ମିକଂ ॥
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥ ତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିଂ
ବନ୍ଦେ ଲୋକାଭିରାମଂ ରଘୁକୁଳ ତିଲକଂ ରାଘବଂ ରାବଣାରିଂ

ସୂତ ଉବାଚ ।

ବନେ ନାରଦ ଋଷିବର । ମନରେ କରଣ ବିଚାର ॥
ଭ୍ରମଣ କଲେ ସର୍ବଲୋକ । ଅତ୍ୟନ୍ତ ହୋଇଣ ଉତ୍ସୁକ ॥
ସୁଖରେ ବ୍ରହ୍ମଲୋକ ଗଲେ । ସତ୍ୟରେ ପ୍ରବେଶ ହୋଇଲେ ॥
ମନରେ ଭାବିଥିଲେ ଯାହା । ସନ୍ତୁଷ୍ଟ ହେଲେ ଦେଖି ତାହା ॥
ମାର୍କଣ୍ଡ ଆଦି ମୁନିବର । ସ୍ତବ କରନ୍ତି ନିରନ୍ତର ॥
ଆବର ଶ୍ରୁତ ବେଦମାନ । ଅଛନ୍ତି ହୋଇ ମୂର୍ତ୍ତିମାନ ॥
ଭୂତଭବିଷ୍ୟ ବର୍ତ୍ତମାନ । ଯହିଁ ଅଛନ୍ତି ବିଦ୍ୟମାନ ॥
ବାଗ୍‌ଦେବୀଶକ୍ତି ଆଦି ଯେତେ । ସେବା କରନ୍ତି ନାନାମତେ ॥
ବେଷ୍ଟିତ ହୋଇ ଗୁରୁପାଶେ । ରହି ଅଛନ୍ତି ଅବଶେଷେ ॥
ଦେଖିଲେ ତହିଁ ପଦ୍ମାସନ । ବସି ଅଛନ୍ତି ସିଂହାସନ । ୧୦ ।
ଭକ୍ତ ଅଭୀଷ୍ଟ ଫଳଦାମି । ସର୍ବଙ୍କ ପ୍ରଭୁ ଅନ୍ତର୍ଯ୍ୟାମି ॥
ବାଳ ସୂର୍ଯ୍ୟର ପ୍ରାୟ ଜ୍ୟୋତି । କିବା କହିବା ତାର ଗତି ॥
ସେ ସଭା ଅପୂର୍ବ ସୁନ୍ଦର । କି ଅବା ଦେବା ପଟାନ୍ତର ॥
ସାଷ୍ଟାଙ୍ଗ ହୋଇ ଦଣ୍ଡବତ । କରିଲେ ମୁନି ମହାଭକ୍ତ ॥
ସ୍ତବ କରିଲେ ନାନାମତେ । ସନ୍ତୁଷ୍ଟ ହୋଇ ଏକଚିତ୍ତେ ॥
ପୁଛିଲେ କମଳ ଆସନ । କି କାର୍ଯ୍ୟେ ତୁମ୍ଭ ଆଗମନ ॥

କହ ତୁମ୍ଭର ଯାହା ଇଚ୍ଛା । ପୂର୍ଣ୍ଣ କରିବୁ ମନୋବାଞ୍ଛା ॥
କରୁଣା ଦେଖି ମୁନିବର । ଆନନ୍ଦେ କରନ୍ତି ଉତ୍ତର ॥

ନାରଦ ଉବାଚ ।

ହେ ମହାପ୍ରଭୁ ପଦ୍ମାସନ । ପୂର୍ବେ ମୁଁ କରଛି ଶ୍ରବଣ ॥
ସର୍ବ ବିଷୟ ନିଷ୍ଟପଣେ । ବର୍ଣ୍ଣନା କଲ ମୋ ନିକଟେ ।୨୦।
ପାପୀ ଅଛନ୍ତି ଏ ଜଗତେ । କଳିରୂପେ ହଇବେ ସମସ୍ତେ ॥
ତାହା ଶୁଣିବା ଇଚ୍ଛା ମୋର । କହିବା ହେଉ ବେଦବର ॥
ପ୍ର[illegible]ହେବ ମହା କଳି । ପୁଣ୍ୟ ଛାଡ଼ିବେ ନର ନାରୀ ॥
ପାପ କାର୍ଯ୍ୟରେ ରତ ହେବେ । କଳିରୂପେ ସଂସାରୁ ତରିବେ ॥
ମିଥ୍ୟା କହିବେ ପରନିନ୍ଦା । ପର ଦ୍ରବ୍ୟରେ ଲୁବ୍ଧ ସଦା ॥
ପରସ୍ତ୍ରୀ ରମଣ ବାଞ୍ଛାରେ । ମନ ବଳିବ ନିରନ୍ତରେ ॥
ଯୋଷା ଯାତରେ ଅବସ୍ଥିର । ପାଗଳ ଭାବେ ସଦା ସ୍ଥିର ॥
ପର ହିଂସାରେ ମଜିଥିବେ । ରମଣୀ ସେବାରେ ରହିବେ ॥
କାମର ଦାସ ପ୍ରାପ୍ତ ହୋଇ । ଅଜ୍ଞାନ ଭାବେ ସଦା ରହି ॥
ହରିନାମକୁ ତୁଚ୍ଛ କରି । ଆତ୍ମ ପ୍ରଶଂସା ସେ ଆଚରି ।୩୦।
ମ୍ଲେଚ୍ଛ ହୋଇବେ ଦ୍ୱିଜଗଣ । ବେଦ ବିକିବେ ଜଣ ଜଣ ॥
ବିଦ୍ୟା ଶିଖିବେ ଧନ ଲୋଭେ । ଅହଙ୍କାରରେ ମଜିଥିବେ ॥
କ୍ଷତ୍ରିୟ ବୈଶ୍ୟ ଆଦି ଯେତେ । ନିଜ ଧର୍ମକୁ ଅବିରତେ ॥
ତ୍ୟାଗ କରିବେ ପୁଣ ପୁଣ । ପ୍ରତାରଣାରେ ସଦା ମନ ॥
ବ୍ରାହ୍ମଣ କାର୍ଯ୍ୟ ଶୂଦ୍ରଗଣ । କରି ବଞ୍ଚିବେ ଜଣ ଜଣ ॥
ଧମସ୍ତ ନାରୀ ଆଚରିବେ । ବ୍ୟଭିଚାରରେ ଧନ ନେବେ ॥
କର୍ତ୍ତୃତ୍ୱ ସ୍ୱପୁର ଉପର । କରିବେ ନିର୍ଭୟେ ଅନ୍ତର ॥
ସ୍ୱାମି କଥାକୁ ନ ମାନିବେ । ଆପଣା ଇଚ୍ଛାରେ ଚଳିବେ ॥
ହେ ସ୍ୱାମି କହିଲି ମୁଁ ଯାହା । ଉପାୟ ଥିଲେ କହ ତାହା ॥
ନରମାନଙ୍କ ଦୁଷ୍ଟ ବୁଦ୍ଧି । ତରିବେ ସଂସାର ବାରିଧି ।୪୦।

ସଦ୍‌ଗତି ପାଇବେ କେବଳ । ବ୍ୟାକୁଳ ହୁଏ ମୋର ମନ ॥
ଏ କଥା କହନ୍ତେ ନାରଦ । ମନରେ ହୋଇଣ ବିଷାଦ ॥
ବଦନ୍ତି ସର୍ବ ବିଦ୍ୟମାନ । ସଦସ୍ୟେ ନିର୍ମଳ ଆସନ ॥

ଶ୍ରୀ ବ୍ରହ୍ମୋବାଚ ।

ଶୁଣ ହେ ବୈଷ୍ଣବ ଉତ୍ତମ । କହିବା ଗୋପନ ପରମ ॥
ଯେ ପ୍ରଶ୍ନ ତୁମ୍ଭେ ପଚାରିଲ । ବୁଝାଇ କହିବା ସକଳ ॥
ସକଳ ପ୍ରାଣୀ ହିତକର । ଆରମ୍ଭ କଲେ ବେଦବର ॥
ପୂର୍ବକାଳରେ ହର ପ୍ରିୟା । ଶ୍ରୀରାମ ତତ୍ତ୍ୱରେ ସେ ନେହ ॥
ତ୍ରିପୁରାରିଙ୍କୁ ପଚାରିଲେ । ଶ୍ରୀରାମ ତତ୍ତ୍ୱ ପ୍ରାଣୀ ଭଲେ ॥
ପ୍ରିୟାର କଥା ଶୁଣି ହର । ଅଧ୍ୟାତ୍ମ ରାମାୟଣ ତିର ॥
ଆରମ୍ଭ କଲେ ଶୂଳପାଣି । ପୁରାଣ ଉତ୍ତମ ଯା ଭଣି ।୫୦।
ତା ଶୁଣି ପର୍ବତନନ୍ଦନୀ । ମନ ନିବେଶି ତତକ୍ଷଣି ॥
ପୃଥ୍ୱୀରେ ଦୁର୍ଭାଗ୍ୟ ଯେ ଲୋକ । ଏହା ଶୁଣିଣ ହେବା ମୋକ୍ଷ ॥
ଯେ ଦିନ ଯାଏ ଏ ପୁରାଣ । ନ ହେବ ପ୍ରଚାର ତୁ ଜାଣ ॥
ତଦଧି ବ୍ରହ୍ମହତ୍ୟା ପାପ । ଆବର ଯେତେ ମହାପାପ ॥
ବ୍ୟାପି ରହିବ ଜଗତରେ । କଳିକାଳର ପ୍ରବଳରେ ॥
ନିଜ ନିଜର ବଳେ ରହି । ସବଦା ଅହଙ୍କାର ବହି ॥
ଶମନ ଦୂତ ସେହିକାଳେ । ନିର୍ଭୟେ ଆସି ଜଗତରେ ॥
ନ୍ୟାୟ ପଢ଼ିଣ ଆତ୍ମ ତତ୍ତ୍ୱ । ବିବାଦେ ଅବଶ୍ୟରେ ରତ ॥
ଶାସ୍ତ୍ର ଦରଶି ବଙ୍କବର । ଦୁର୍ବୋଧ ହୋଇ ନିରନ୍ତର ॥
ନାରଦ କହୁଅଛୁ ଶୁଣ । ପଢ଼ି ଶୁଣିବେ ଯେଉଁ ଜନ ।୬୦।
ସକଳ ପାପରୁ ତରିବେ । ଅନ୍ତରେ ମୋକ୍ଷ ସେ ହୋଇବେ
ସେ କଥା କହୁଅଛୁ ଶୁଣ । ନିଷ୍ପାପି ଜଗତେ ଉତ୍ତମ ॥
ଶିବଙ୍କଠାରୁ ଯାହା ଶୁଣି । ତାହାକୁ କହୁଛେ ବଖାଣି ॥
ଯତନ ହୋଇ ରାମାୟଣ । ଭାବେ ପଢ଼ିବେ ଯେଉଁ ଜନ ॥

ଏକ ଶ୍ଳୋକ ବା ଅର୍ଦ୍ଧ ଶ୍ଳୋକ । ଯେ ନର ପଢିବ ବିବେକ ॥
ନିର୍ମଳ ଶରୀର ତାହାର । ପାଇବ କହି ବେଦବର ॥
ସ୍ଥିର ଗୃହରେ ଲକ୍ଷ୍ମୀ ସଦା । ଉଚ୍ଚାର କରିବ ପ୍ରତ୍ୟହ ॥
ଭବବନ୍ଧନ ଜାଲ ପାଶ । ମୋକ୍ଷ ଲଭିବ ଅବଶେଷ ॥
ନିଦ୍ରା ତେଜିଣ ରାମ ନାମ । ଭୁଞ୍ଜେ ତ୍ରିଛାଡ଼ ପେଣ୍ଟିଜନ ॥
ଅଶ୍ୱମେଧର ଫଳ ପାଏ । ଏ କଥା ଅଟଇ ନିଶ୍ଚୟେ ।୭୦।
ଅନାଦରରେ ଯେଉଁ ପ୍ରାଣୀ । ରାମ ଚରିତ କର୍ଣ୍ଣେ ଶୁଣି ॥
ପା[illegible]ଶିରୁ ମୁକ୍ତ ହୁଏ । ଅନ୍ତେ ପରମ ପଦ ପାଏ ॥
ଏ ଗ୍ରନ୍ଥ ନିକଟେ ଯେ ନର । କରଇ ଯେବେ ନମସ୍କାର ॥
ସର୍ବଦେବତା ପୂଜା ଫଳ । ପାଇବ ସେହି ତତକାଳ ॥
ପୁସ୍ତକ ଲେଖି ରାମ ଭକ୍ତେ । ପ୍ରଦାନ କରିବ ଚିତ୍ତରେ ॥
ତାହାର ଫଳ ଲଭ ଶୁଣ । କହି ତୋଷିଲେ ପଦ୍ମାସନ ॥
ବେଦ ସକଳ ଶାସ୍ତ୍ର ଯେତେ । ସମସ୍ତେ ପଢ଼ି ଏକଚିତ୍ତେ ॥
ମୋକ୍ଷାଦି ଧର୍ମ ଶାସ୍ତ୍ର ଯେତେ । ପଢ଼ି ଶୁଣିବେ ଏକଚିତ୍ତେ ॥
ରାମଚରିତ ସଙ୍ଗେ ତୁଲ । ସମାନ ନୋହିବ କେବଳ ॥
ଏକାଦଶୀରେ ଅଭୋଜନ । ସତ୍ୱରେ କରଇ ଗାୟନ ।୮୦।
ଗାୟତ୍ରୀ ଚୈତନ୍ୟ ମଙ୍ଗଳ । ପାଇବ ପ୍ରତ୍ୟେକ ଅକ୍ଷର ॥
ଶ୍ରୀରାମ ଜନ୍ମ ଦିବସରେ । ଅଭୁକ୍ତ ରହିବ ବାସରେ ॥
ନିଶାକାଳରେ ଉଜାଗର । ପଢ଼ିବା ଶୁଣିବା ଯେ ନର ॥
ସୂର୍ଯ୍ୟଙ୍କୁ ରାହୁ ଗ୍ରସ୍ତକାଳେ । କୁରୁକ୍ଷେତ୍ରରେ ପୁଣ୍ୟଫଳେ ॥
ଜଳ ମଧ୍ୟରେ ଉଭା ହୋଇ । ବିପ୍ରଗଣଙ୍କୁ ଦାନ ଦେଇ ॥
ପୂର୍ବ ଫଳରେ ଯେ ସମାନ । ତୁଳନା ନୋହିବ ବଚନ ॥
ପ୍ରଫୁଲ୍ଲାନ୍ତରେ ରାମାୟଣ । ଯେ ନର କରିବ ଗାୟନ ॥
ସୁରେନ୍ଦ୍ରପୁରେ ଯେବେ ଦେବେ । ଅଜ୍ଞାକୁ ପାଳନ କରିବେ ॥
ଭକ୍ତି ହୋଇଣ ରାମାୟଣ । ପଢ଼ି ଶୁଣିବ ଯେ ସଜ୍ଜନ ॥

ସେ କାଳେ କର୍ମ ଅନୁଷ୍ଠାନ । ଫଳ ପାଇବ କୋଟିଗୁଣ ।୯୦।
ଶ୍ରୀରାମ ହୃଦୟକୁ ପୁଣ । ପଢ଼ି ଭଜିବ ସ୍ଥିରମନ ॥
ବ୍ରହ୍ମହତ୍ୟାଦି ପାପ ତାର । ତତ୍‌କ୍ଷଣରେ କଳେବର ॥
ନଷ୍ଟ ପ୍ରଶୁଦ୍ଧ ହେବ ତାର । କହି ଘୋଷିଲେ ବେଦବର ॥
ହନୁମାନଙ୍କ ସମ୍ମୁଖରେ । ରାମହୃଦୟ ପାଠକଲେ ॥
ତ୍ରିବାର ପଢ଼ି ନମସ୍କାର । ମନସ୍କାମନା ପୂର୍ଣ୍ଣ ତାର ॥
ତୁଳସୀ ବଟ ବୃକ୍ଷମୂଳେ । ରାମହୃଦୟ ପାଠକଲେ ॥
ପ୍ରତ୍ୟହ ପ୍ରଦକ୍ଷିଣ କରେ । ବ୍ରହ୍ମହତ୍ୟାଦି ପାପୁ ତରେ ॥
ଶ୍ରୀରାମ ତତ୍ତ୍ୱ ସମ୍ପୂର୍ଣ୍ଣରେ । ସମସ୍ତ ଜାଣନ୍ତି ଶଙ୍କରେ ॥
ତଦର୍ଦ୍ଧ ଜାଣନ୍ତି ପାର୍ବତୀ । ଶୁଣ କହିବା ମହାମତି ॥
ଆମ୍ଭେ ତଦର୍ଦ୍ଧ ଜାଣୁ ଶୁଣ । ସମସ୍ତ କରନ୍ତୁ ବଖାଣ ।୧୦୦।
ଏହାର ମାହାତ୍ମ୍ୟ ଯେ ଜନ । ଜାଣେ ତା ଶୁଦ୍ଧ ହୋଏ ମନ ॥
ଯେ ପାପ କରି ପ୍ରାଣୀମାନେ । ସକଳତୀର୍ଥ ଦରଶନେ ॥
ଏହାର ସମାନ ସର୍ବଦା । ପାପ ନାଶନ ନୋହେ ବାଧା ॥
ସାଗର ମନ୍ଥନେ ବେଦାନ୍ତ । ବୁଝିବ ଏ ଗୀତ ଏକାନ୍ତ ॥
ଶ୍ରୀରାମଚନ୍ଦ୍ର ସୁଧା ଭାବ । ଲକ୍ଷ୍ମଣ ଦେଲେଣ ଆଗ୍ରହ ॥
ଏ ସୁଧା ଭକ୍ଷିଲେ ଅମର । ନଷ୍ଟ ହୋଇବେ ସର୍ବନର ॥
ଭାର୍ଗବ ପର୍ଶୁରାମ ଯତ । ଯେ କାର୍ତ୍ତବୀର୍ଯ୍ୟ ଦୁଷ୍ଟମତ ॥
ତାହାକୁ ବଧିବ ତ ପାଇଁ । ଧନୁର୍ବିଦ୍ୟାକୁ ଶିଖିବାଇଁ ॥
ଶଙ୍କର ନିକଟ ଚଳିଲେ । ପାର୍ବତୀ ମୁଖରୁ ଶୁଣିଲେ ॥
ଏ ଗୀତା ପାଠକର ମନ । ଗୀତାକୁ କଲେ ଅଧ୍ୟୟନ ।୧୧୦।
ଅଂଶ ଧାରଣ ନାରାୟଣ । ହୋଇ ନାଶିଲେ କ୍ଷତ୍ରିୟଗଣ ॥
ବ୍ରହ୍ମହତ୍ୟାଦି ପାପ ଯେତେ । ଯାନ୍ତୁ କ୍ଷୟ ଏ ଜଗତେ ॥
ମାସେକ ଗୀତା ପାଠକଲେ । ସକଳ ପାପରୁ ତରିଲେ ॥
ଅଭକ୍ଷ ଭକ୍ଷ ଯେବେ କରେ । ମିଥ୍ୟା କଥାରେ ବଞ୍ଚେ ନରେ ॥

ଏପରି ପାପ କରିଥିଲେ । ରାମଗୀତାରେ ସେ ତରିଲେ ॥
ଶାଲଗ୍ରାମର ଟିଲା ଆଗେ । ଅଶୁଦ୍ଧ ତୁଳସୀହିଁ ଲାଗେ ॥
ଲକ୍ଷ ସକଳ ପାଠକଲେ । ରାମଗୀତାକୁ ଏ ସମ୍ଭୁଲେ ॥
ବାକ୍ୟ ଅଗୀତ ଫଳଲାଭ । କହିଲେ କମଳ ଉଦ୍ଭବ ॥
ଶ୍ରାଦ୍ଧ ସମୟେ ଯେଉଁ ପ୍ରାଣୀ । ଶ୍ରୀରାମଗୀତାକୁ ବଖାଣି ॥
ଉତ୍ତମ ସଂସ୍କାର ବ୍ରାହ୍ମଣ । ଅନନ୍ୟେ କରଇ ଭୋଜନ ।୧୨୦
ସେହୁ ସମୟେ ପିତୃଗଣ । ବିଷ୍ଣୁପଦକୁ ଯାନ୍ତି ପୁଣ ॥
ଏକାଦଶୀରେ ଅନାହାର । ଦ୍ୱାଦଶୀ ଦିନେ ଏ ପ୍ରକାର ॥
ବଟବୃକ୍ଷର ମୂଳେ ଯାଇଁ । ଶ୍ରୀରାମଗୀତାକୁ ପଢ଼ଇ ॥
ଅମର ହୁଏ ସେହି ଜନ । ତାହାର ଫଳ ଲକ୍ଷ ଜାଣ ॥
ଶ୍ରୀରାମ ପ୍ରତିମୂ ପୂଜା ପାଇ । ଦେବତା ସମସ୍ତ ଦେଖଇ ॥
ଦାନାଦି ଧ୍ୟାନ ତୀର୍ଥ ସ୍ନାନ । ନକରେ ମୂଢ଼ ଯେଉଁ ଜନ ॥
ଏ ଗୀତା ପାଠକଲେ ତରେ । ସଂସାର ତାପରୁ ନିସ୍ତରେ ॥
ନାରଦ ଶୁଣ ସତ୍ୟ କଥା । ଆରମ୍ଭ କଲେ ଜଗଦ୍ଧାତା ॥
ଏ ରାମାୟଣ ସଙ୍ଗତରେ । ଶ୍ରୁତି ସ୍ମୃତି ଯେ ଏ ସଂସାରେ ॥
ପୁରାଣ ଆଦ ଅଛି ଯେତେ । ଇତିହାସ ବା କେତେ କେତେ ॥
ଷୋଡ଼ଶ ଅଂଶରେ ସମାନ । ତୁଳଣା ନୋହେ କଦାଚନ ॥
ଶ୍ରୀରାମ ମାହାତ୍ମ୍ୟ ଯାହାର । ପ୍ରକାଶ ହୁଅଇ ଅନ୍ତର ॥
ବିରାଜେ ବ୍ରହ୍ମ ତା ହୃଦୟ । ସଫଳ ହୋଇବ ନିଶ୍ଚୟ ॥
ନାରଦ ପ୍ରଶ୍ନ ପ୍ରଫୁଲ୍ଲରେ । ବର୍ଣ୍ଣନା କରିଲେ ସତ୍ୱରେ ॥
ଯେ ଶ୍ରଦ୍ଧା ସମୟରେ ପୁଣି । ପାଠ କରିବେ କିବା ଶୁଣି ॥
ନିଶ୍ଚୟ ଦ୍ରବ୍ୟ ପୂଜ୍ୟ ହୋଇ । ବିଷ୍ଣୁପାଦକୁ ପାଏ ସେହି ॥
ବିଶେଷ ଜ୍ଞାନ ଅଟେ ଯାର । ବିନାଶ ନାହିଁ ଏ ସଂସାର ॥
ଭୟ କରନ୍ତି ସୁରଗଣ । ଭଜନ୍ତି ତତେ ଅନୁକ୍ଷଣ ॥
ଉଦ୍ଧାର କରିବାର ପାଇଁ । ସଂସାରେ ନର ଦେହ ବହି ॥

ମାୟା ମାନବ ରୂପେ ଜାତ । ସୂର୍ଯ୍ୟବଂଶରେ ଅବତୀର୍ଣ୍ଣ ।୧୪୦।
ସକଳ ରାକ୍ଷସ ବିନାଶ । କରିବେ ସଂସାର ଉଲ୍ଲାସ ॥
ଭବ ଦୁରିତ ଦୂରକର । ପୃଥ୍ୱୀକୁ ସଙ୍କଟୁ ଉଦ୍ଧାରି ॥
ଅଚଳ କୀର୍ତ୍ତି ଏ ସଂସାରେ । ରକ୍ଷା କରିବେ ବାରେ ବାରେ ॥
ମନ ବଳଲ୍ଲ ଅବଶେଷ । ବ୍ରହ୍ମ ରୂପରେ ସେ ପ୍ରକାଶ ॥
ଜାନକୀପତି ଜଗନ୍ନାଥ । ମନ ମୋ ରହୁ ଅବିରତ ॥
ଯେ ସୃଷ୍ଟି ସ୍ଥିତି ପ୍ରଳୟରେ । ମାୟାକୁ ଆଶ୍ରିତ ନ କରେ ॥
ଶୂନ୍ୟ ହୋଇଣ - ହେଁ ଯେହୁ । ସମାନ ଭାବ ତାର ଯହୁଁ ॥
ବିଜ୍ଞାନମୟ ମୂର୍ତ୍ତି ଯାର । ନମେ ଅଜର ତାହାଙ୍କର ॥
ନବରସମୟ ଅମୃତଜ୍ଞାନ । ବିଦିତ ହୁଏ ଯହିଁ କ୍ଷଣ ॥
ଉପାଧି ରହେ ପୁନର୍ବାର । ରାମ ଚରଣେ ନମସ୍କାର ।୧୫୦।
ସମସ୍ତ ପୁରାଣର ସାର । ଶୁଭ ଫଳଦ ବାର ବାର ॥
ରାମ ଚରିତ ଯେଉଁ ନରେ । ଶ୍ରବଣ ଅଧ୍ୟୟନ କରେ ॥
ସେ ସବୁ ମୁକ୍ତ ସେହିକ୍ଷଣି । ଶ୍ରୀରାମ ପଦେ ହୋଏ ଲୀନ ॥
ପ୍ରତି ଦିନରେ ଯେଉଁ ଜନ । ପଢ଼େ ବା ଶୁଣେ ଏ ପୁରାଣ ॥
ଦଶସହସ୍ର କୋଟି ଦାନ । ଗୋଟି କଲେ ବିତରଣ ॥
ଅଧିକ ଫଳ ହୁଏ ତାର । କହନ୍ତି ପ୍ରଭୁ ବେଦବର ॥
ମୁକ୍ତିର ବାସନା କାରଣ । ଉତ୍ତୀର୍ଣ୍ଣ ସଂସାର ବନ୍ଧନ ॥
ପ୍ରତ୍ୟହ ଏହି ରାମାୟଣ । ଶ୍ରୀମନ୍ତ କରନ୍ତି ଅଧ୍ୟୟନ ॥
ନର ରୂପରେ ଶିବବର । ଶରୀର ରୂପରେ ରାମଙ୍କର ॥
ଶ୍ରୀରାମ ରୂପ ସାଗରରେ । ନିତ୍ୟ ସ୍ନାନ ସହିତରେ ।୧୬୦।
ଯେତେ ସଂସାରେ ଜୀବଛନ୍ତି । ସର୍ବଦା ପବିତ୍ର କରନ୍ତି ॥
ଅନେକ ଦଶ ତ୍ରିଲୋଚନ । ଧନେଶ୍ୱର ସୂର୍ଯ୍ୟ ବ୍ରହ୍ମା ସମ ॥
କୈଳାସ ଶିଖେ ସିଂହାସନେ । ଇଷ୍ଟ ଦେବଙ୍କୁ ଭାବ ମନେ ॥
ଦେବତାମାନେ ଉପାସନା । ଯା ପାଦେ କରନ୍ତି ବନ୍ଦନା ॥

ପର୍ବତନନ୍ଦନୀ ସେକାଳେ । ଭକ୍ତିରେ ବସି ବାମକୋଳେ ॥
ବିନତୀ ହୋଇଣ ଗଉରୀ । ଭକ୍ତିଭାବରେ ସେ ପଚାରି ।

ପାର୍ବତୀ ଉବାଚ ।

କରୂପେ ଘୋର ପାପ ନାଶ । କହ ସକଳ ଗିରୀଶ ॥
ଜଗତ ମଧ୍ୟେ ଯେ ଆଧାର । ତା ପାଦେ ମୋର ନମସ୍କାର ॥
ବ୍ରହ୍ମ ରୂପରେ ଏ ସଂସାର । ଦେଖିଛ ନିଜ କଳେବର ॥
ହେ ଦେବ ଦେବ ଯେ ଅନନ୍ତ । ସେକଥା ପୁଛାଇ ହେମନ୍ତ ।୧୭୦।
ସେ [illegible]ଲୋଚନ ନାରାୟଣ । ଅଟନ୍ତି ପୁରୁଷ ପ୍ରଧାନ ॥
ତାହାର ଅପୂର୍ବ ଆଖ୍ୟାନ । କହିବା ହେଉ ତତ୍ତ୍ୱଜ୍ଞାନ ॥
ଯଦା ଅଶ୍ରୁପୂରଣୀ ତତ୍ତ୍ୱ । ହୋଇଲେ ଜ୍ଞାପନ ସମସ୍ତ ॥
ତାହାର ଭକ୍ତର ନିକଟ । ସମ୍ପୂର୍ଣ୍ଣ କରଇ ପ୍ରକଟ ॥
ହେ ଦେବ ତୁମ୍ଭେ ପ୍ରିୟ ମୋର । ଏକାନ୍ତ ଭକ୍ତ ମୁଁ ତୁମ୍ଭର ॥
ଯେହେତୁ ସେହି ତତ୍ତ୍ୱ ପୁଣି । ପଚାରୁଅଛି ଏହିକ୍ଷଣି ॥
ମାୟା ନ କର କହ ସତ୍ୟ । କରୁଛି ପଦେ ପ୍ରଣିପାତ ॥
ଜ୍ଞାନତ ବୈରାଗ୍ୟ ଦର୍ଶନ । ଭକ୍ତିର ଉପାୟ କୀର୍ତ୍ତନ ॥
ସଂସାର ବନ୍ଧନର ମୁକ୍ତି । କେମନ୍ତେ ପାଇବେ ସଦ୍ବ୍ରତ ॥
ସେ ଉପଦେଶ ଅହେ ଦେବ । କହିବା ହେଉ ସଦାଶିବ ।୧୮୦।
ଏକେତ ମୁହିଁ ନାରୀଜାତି । ଅଟଇ ଅଳ୍ପ ବୁଦ୍ଧି ଶକ୍ତି ॥
କୃପାକରିଣ ବୁଝାଇବ । ଅଧମ ଯେ ଭାବେ ବୁଝିବ ॥
ଅଳ୍ପ ବର୍ଣ୍ଣରେ ପଦଯୁକ୍ତ । ବିନ୍ୟାସ କରିବ ସମସ୍ତ ॥
ଏହାର ଭିନ୍ନ କଥା ଏକ । ରହସ୍ୟ ଅଛଇ ଅନେକ ॥
ଜାଣିବା ଲାଗି ମୋର ମନ । ଇଚ୍ଛା କରୁଛି ତ୍ରିଲୋଚନ ॥
ହେ ନାଥ ଅଧୀନର ଆଶା । କେବଳ ଚରଣ ଭରସା ॥
ହେ ମହାପ୍ରଭୁ ମହାଦେବ । ସର୍ବ ମୋ ଆଗେ ବଖାଣିବ ॥
ଶ୍ରୀରାମଚନ୍ଦ୍ର ଦୃଢ଼ ଭକ୍ତି । ପୃଥ୍ବୀରେ ଯାର ବୋଲି ଖ୍ୟାତି ।

୩

ଭବସାଗର ତରିବାରେ । ଶ୍ରୀରାମ ନାମ ତରଣୀରେ ॥
ଭକ୍ତି ଭାବରେ ମୁକ୍ତି ହୁଏ । ସଂସାର ବନ୍ଧନ ଛୁଡ଼ାଏ ।୧୯୦।
ଏଦ୍ୟପି ଏ କଥା ବିଦିତ । ସଂଶୟ ମନରେ ଉଦିତ ॥
ବିଷଦ କରିବେ ତ୍ରିଲୋଚନ । କର ମୋ ସଂଶୟ ଛେଦନ ॥
ଶ୍ରୀରାମ ପରମ ଈଶ୍ୱର । ଛେଦିବା ଲାଗି ଧର୍ମ ଭାର ॥
ମାୟାରେ ରାଗ ଦ୍ୱେଷ ଯେତେ । ନ କରେ ପରଶ ସମସ୍ତେ ॥
ଭକ୍ତିରେ ଭକ୍ତଗଣମାନେ । ପୂଜା କରନ୍ତି ସର୍ବ କ୍ଷଣେ ॥
ସର୍ବ ଶେଷରେ ତତ୍ତ୍ୱ ଲଭ । ଅନ୍ତରେ ମୋକ୍ଷ ସେ ପାଇବେ ॥
ଅବୃତ ମାୟାରେ ଶ୍ରୀରାମ । ବିଦିତ ନିଜରୂପ ବ୍ରହ୍ମ ॥
ଜଣାଣ କଲେ ପ୍ରଜାପତି । ଜାଣିଲେ ଈଶ୍ୱର ଶ୍ରୀପତି ॥
ପୁଣି କଥାଏ ତ୍ରିଲୋଚନ । କହିବା ହେଉ ବିଦ୍ୟମାନ ॥
ଶ୍ରୀରାମ ନିଜ ତତ୍ତ୍ୱ ଜାଣି । ଯାହା କରିବେ କାହିଁ ପୁଣି ।୨୦୦।
ମନସ୍ତାପରେ ମନେ ମନେ । ଭଜିଲେ ମହାଘୋର ବନେ ॥
ଯଦି ନ ଜାଣେ ସୀତାପତି । ନିଜର ତତ୍ତ୍ୱ ମହାମତି ॥
ତେବେ ସେପରି ମୁକ୍ତି ହେବେ । ସାମାନ୍ୟ ଲୋକପରି ହେବେ ।
ଏ ପ୍ରଶ୍ନ ଶୁଣି ତ୍ରିଲୋଚନ । ସଂଶୟ କରିଲେ ଛେଦନ ॥

ଶ୍ରୀମହେଶ୍ୱର ଉବାଚ ।

ହର କହିଲେ ଶୁଣ ପ୍ରିୟା । ଶ୍ରୀରାମ ତତ୍ତ୍ୱରେ ସେନେହା ॥
ଶ୍ରୀରାମ ତତ୍ତ୍ୱ ଜାଣିବାରେ । ମନ ବଳିଛି ନିରନ୍ତରେ ॥
ତୁମ୍ଭ ସମାନେ ବ୍ରହ୍ମ ଭକ୍ତ । ପ୍ରକାଶ କଲେ ସେ ତତ୍ତ୍ୱତ ॥
ଏ କଥା ଜ୍ଞାନର ରହସ୍ୟ । ନ କର କା ଆଗେ ପ୍ରକାଶ ॥
ତୁମ୍ଭ ଭକ୍ତିରେ ବାଧ୍ୟ ହୋଇ । ରାମ ଚରଣ ଚିତ୍ତେ ଦେଇ ॥
ସରଳ କରିବେ ସେହି ତତ୍ତ୍ୱ । ତୁମ୍ଭର ଅଗ୍ରତେ ସମସ୍ତ ।୨୧୦।
ଯଦ ପଦକେ ମୁଁ ବୁଝାଇ । କହିବି ଶୁଣ ମନଦେଇ ॥
ଶ୍ରୀରାମଚନ୍ଦ୍ର ପୂର୍ଣ୍ଣ ବ୍ରହ୍ମ । ଅନନ୍ତ ଶକ୍ତି ସେ ପରମ ॥

ଅନାଦ୍ୟମୟ ନାରାୟଣ । ପ୍ରକୃତିଠାରୁ ସେହି ଭିନ୍ନ ॥
ନିଜର ମାୟାକୁ ଧାରଣ । ଯେ କରି ସଂସାର ସୃଜନ ॥
ଶୂନ୍ୟ ଭାବରେ ସର୍ବକ୍ଷଣ । ବାହାର ଅନ୍ତରେ ରହଣ ॥
ବିରଜେ ମାୟା ଭାବଧରେ । ରହଣ ସମସ୍ତ ଅନ୍ତରେ ॥
କେହି ନ ଜାଣେ ତା ସ୍ୱରୂପ । କରି ଆଚ୍ଛାଦ ମାୟାରୂପ ॥
କରିବା ଲାଗି ଦରଶନ । ସର୍ବଦା କରେ ନିରୀକ୍ଷଣ ॥
ଯା ସକଳ ମାୟାରେ ଅଛନ୍ତି । ତତ୍ତ୍ୱ ନ ଜାଣେ ସେହି ଜନ ॥
ଯେମନ୍ତ ଚୁମ୍ବକ ପରଶନ । ନିକଟେ କରଇ ଗମନ ।୧୨୯।
ସେପରି ମାୟା ଏ ସଂସାରେ । ଆଶ୍ରୟ ଭ୍ରମଣ ସେ କରେ ॥
ଶ୍ରୀରାମ କୃପା ତତ୍ତ୍ୱଜ୍ଞାନ । ନ କରେ ମାୟା ଆଚ୍ଛାଦନ ॥
ମୁକ୍ତି ହୋଇବ ସେହି ନର । ଆରମ୍ଭ କଲେ ଦଶାନ୍ତର ॥
ବିଜ୍ଞାନମୟ ବ୍ରହ୍ମପୂର୍ଣ୍ଣ । ନିଜର ଅବିଦ୍ୟା କାରଣ ॥
ଅର୍ପିତ କରଇ ତାହାରେ । ଯଜ୍ଞ ଯାଜନା ଜନ୍ୟକରେ ॥
ସଦା କାଳରେ ହେ ବ୍ୟାପ୍ତନ । ଭାବନା ନ କର ସମସ୍ତ ॥
ସ୍ତ୍ରୀ କନ୍ୟା ପୁତ୍ର ଯୁକ୍ତ ହୋଇ । ଏ ଘୋର ସଂସାରେ ଜନ୍ମଇ ॥
ସେ କଥା ବିବେଚନା କର । ଭାବନା ନ ଜଳେ ଅନ୍ତର ॥
କଣ୍ଠସ୍ଥ ସ୍ୱର୍ଣ୍ଣ ଅଳଂକାର । ଗମନ୍ତୁ ନ ଦେଖି ତୁମର ॥
ଅବିଦ୍ୟା ମୋହେ ସର୍ବ ନର । ନ ଜାଣେ କରୁଛି ସଂସାର ।୧୩୦।
ଯେରୂପ ସୂର୍ଯ୍ୟ ମଣ୍ଡଳରେ । ଉଜ୍ଜ୍ୱଳ ହୁଏ ନିରନ୍ତରେ ॥
ଗୁପ୍ତ ଭାବରେ ସେ ନ ରହେ । ଈଶ୍ୱର ଜ୍ଞାନ ସଦା ହୁଏ ॥
ତୁମେ ଅବିଦ୍ୟା ନ ସମ୍ଭବେ । ପୁଣି କହୁଛି ଶୁଣ ଏବେ ॥
ଚକ୍ଷୁ ଦୋଷରେ ଦିଶୁଥାଏ । ଶତେକ ଚକ୍ଷୁର ପରାଏ ॥
ଗୃହସ୍ଥ ଆଦି ଯେତେ କର୍ମ । ସେପରି ଦେଖିବ ସମାନ ॥
ଦେହେ ଇନ୍ଦ୍ରିୟ ସେହିରୂପ । ମନେ ସନ୍ଦେହ ନାନାରୂପ ॥
ସକଳେ ଈଶ୍ୱରେ ଅର୍ପଣ । ବିମୁକ୍ତ ହେବ ସର୍ବକ୍ଷଣ ॥

ହୃଦୟ ସମ ଭାବେ ରବ । ଦିବସ ରଜନୀ ନ ଭାବ ॥
ସେ ପରା ପାପହାରୀ ରାମ । ବିଦ୍ୟା ଅବିଦ୍ୟା ମଯୁଜ୍ଞାନ ॥
ଦରଷ ଯୁକ୍ତ ଜ୍ଞାନରୂପ । ଶ୍ରୀରାମ ଅବିଦ୍ୟା ଛରୂପ ।୨୪୦।
ମାୟା ଆଶ୍ରୟ ନିଦର୍ଶନ । ଅବିଦ୍ୟା ସମ୍ଭବେ ନା ଅନ୍ୟ ॥
ଶ୍ରୀରାମ କମଳଲୋଚନ । ନାହିଁ ତା ମୋହର କାରଣ ॥
ପାର୍ବତୀ କର ହେ ଶ୍ରବଣ । ଶ୍ରୀରାମ ପବନନନ୍ଦନ ॥
ସୀତା ଅଟନ୍ତି ମୁକ୍ତିଦାତା । ହସି କହିଲେ ପଞ୍ଚମଥା ॥
ଦୁର୍ଲ୍ଲଭ ଭକ୍ତିର କାରଣ । ତୁମ୍ଭର ନିକଟେ କୀର୍ତ୍ତନ ॥
ଅନେକ ଦେବାସୁରେ ରାମ । ରାବଣ ବଧିବା କାରଣ ॥
ସମସ୍ତ ପୁତ୍ର ଅନୁଚରେ । ରାବଣ ନିହତ ଶେଷରେ ॥
ସୁଗ୍ରୀବ ହନୁମାନ ଭକ୍ତ । ସୀତା ଲକ୍ଷ୍ମଣ ଅନୁରକ୍ତ ॥
ଦର୍ଶନ ଦେଲେ ଅଯୋଧ୍ୟାରେ । ବଶିଷ୍ଠ ଆଦି ମୁନିବରେ ॥
ସକଳ ତୀର୍ଥୋଦକ ବାର । ଶ୍ରୀରାମେ ଅଭିଷେକ କର ।୨୫୦।
ବହିଣ ରତ୍ନସିଂହାସନେ । ସୀତା ସହିତ ଏକମନେ ॥
କୋଟିଏ ସୂର୍ଯ୍ୟ ସମ ପ୍ରଭା । ଶ୍ରୀରାମଚନ୍ଦ୍ର ଦେହ ଆଭା ॥
ସକଳ କାର୍ଯ୍ୟଙ୍କୁ ସାଧନ । କରିଲେ ପବନନନ୍ଦନ ॥
ସେ ବାଞ୍ଛା ଏକମାତ୍ରକରେ । ରହିବେ ଜ୍ଞାନ ସ୍ୱବସ୍ଥାରେ ॥
ସମ୍ମୁଖେ ଉଭା ହେଲେ ଯାଇଁ । ବେଦନନ୍ଦନଙ୍କୁ ଚିରେ ଦେଇ ॥
ଶ୍ରୀରାମଚନ୍ଦ୍ର, ଜାନକୀର । ବିଶେଷ ଭକ୍ତ ସେ ଆମ୍ଭର ॥
ପବନନନ୍ଦନ ଅଟଇ । ମାୟା ନ କର କହିବଇଁ ॥
ସତ୍ୟ କହୁଛି ବଇଦେହୀ । ଯାହାଙ୍କୁ ପାପ ନ ଛୁଅଇଁ ॥
ଆମ୍ଭର ତତ୍ତ୍ୱ ଉପଦେଶ । ବିସ୍ତୃତ ଭାବରେ ପ୍ରକାଶ ॥
ସୀତା ଶୁଣିଣ ଏହିଗିର । ଚହ୍ନାଅରନ୍ତି ବାର ବାର ।୨୬୦।

ସୀତା ଉବାଚ ।

ଶ୍ରୀରାମ ଜ୍ଞାନର ସ୍ୱରୂପ । ସ୍ଥୂଳ ବା ସୂକ୍ଷ୍ମ ଅନୁରୂପ ॥

ତାର ସମ୍ବନ୍ଧେ ଦରଶନ । ସର୍ବଦା ରହେ ବିଦ୍ୟମାନ ॥
ସମ୍ପୂର୍ଣ୍ଣ ବ୍ରହ୍ମ ରଘୁପତି । ଆନନ୍ଦେ ପ୍ରପୂରିତ ନୀତି ॥
ଯାହାର ରହିତ ବିକାର । ଷଡ଼ବିଧ ନାନା ପରକାର ॥
ଜ୍ଞାନ ଅଜୀତ ସେ ଦ୍ୱିତୀୟ । ତାହାରେ ନାହିଁକ ନିଶ୍ଚୟ ॥
ତାହାର ରଜ ଗୁଣହୀନ । ଆବର କହୁଅଛୁ ଶୁଣ ॥
ଅଜ୍ଞାନତା ବା ଅନ୍ଧକାର । ଅଚ୍ଛନ୍ନ ନ କରେ ତାହାର ॥
ତମ ବର୍ଜିତ ଅଟେ ଯାର । ସର୍ବାତ୍ମାରୂପେ ସେ ବେହାର ॥
ହେ ହନୂମାନ ତୁମ୍ଭେ ଶୁଣ । ଯେ ସୃଷ୍ଟି ସ୍ଥିତିର କାରଣ ॥
ନିମିଷ ମାତ୍ରେ କରିପାରେ । ସେ ସର୍ବ ଅନ୍ତର ତାହାରେ ।୨୭୩।
ମୁହିଁ ତା ମୂଳ ଶକ୍ତି ରୂପେ । ନିକଟେ ଥାଇ ତା ସମୀପେ ॥
ଅନାୟାସରେ ସର୍ଜିପାରେ । ତିନ ଭୁବନ ନିମିଷରେ ॥
ସଂହର୍ତ୍ତୀ ସପକ୍ଷ ତାହାର । ନଭୁବା ସୃଜନ ଆମ୍ଭର ॥
ତାହାର ମାୟାକୁ ନ ଜାଣି । ସୃଷ୍ଟିରେ ସର୍ବଦା ବଖାଣି ॥
ଏ ଅକଳଙ୍କ ରଘୁକୁଳେ । ଜନମ ହୋଇ ଅଯୋଧାରେ ॥
ହରିବେ ପୃଥ୍ୱୀଙ୍କର ଭାର । ଦେବଙ୍କୁ ସଙ୍କଟୁ ନିସ୍ତାର ॥
ବିଶ୍ୱାମିତ୍ରଙ୍କ ଉପକାର । କରି ତୋଷିଲେ ରଘୁବର ॥
ରାକ୍ଷସମାନଙ୍କୁ ସଂହାର । ଯଜ୍ଞକୁ ରକ୍ଷାକଲେ ତାର ॥
ତାହାଙ୍କ ପାଦ ସ୍ପରଶରେ । ଅହଲ୍ୟା ମନୁଷ୍ୟ ରୂପରେ ॥
ପାଷାଣ ତାର କଳେବର । ତତ୍‌କ୍ଷଣେ ହୋଇଲା ଉଦ୍ଧାର ॥
ଶିବଧନୁକୁ ଭାଙ୍ଗି ପୁଣି । ଗ୍ରହଣ କଲେ ମୋର ପାଣି ॥
ଆମ୍ଭ ସହିତ ଗୃହେ ଯାନ୍ତେ । ଭାର୍ଗବ ଦର୍ପ ଚୂର୍ଣ୍ଣି ପଥେ ॥
ପରତେ ଦ୍ୱାଦଶ ବରଷ । ଅଯୋଧ୍ୟା ସଙ୍ଗେ କରିବାସ ॥
ପାଳିବେ ପିତୃଙ୍କର ସତ୍ୟ । ଅରଣ୍ୟେ ଗମନ ତ୍ୱରିତ ॥
ବିରାଧ ବଧ କରି ପୁଣି । ମାରିଚ ନାମେ ରଘୁମଣି ॥
ମାୟାସୀତାଙ୍କୁ ଦଶାନନ । ରଥରେ ନେଲାକ ବହନ ।୨୮୬।

ଜଟାୟୁ କବନ୍ଧର ମୋକ୍ଷ । ପୂଜିଲେ ଶବରୀ ପ୍ରତ୍ୟକ୍ଷ ॥
ମିତ୍ରତା ସୁଗ୍ରୀବ ସଙ୍ଗରେ । ବାଳିଙ୍କ ବଧିଲେ ସତ୍ୱରେ ॥
ସୀତାଙ୍କ ଅନ୍ୱେଷଣ ପରେ । ସେତୁ ବନ୍ଧନ ପାରାବାରେ ॥
କରିଲେ ଲଙ୍କାପୁର ଧ୍ୱଂସ । ଦଶାନନର ପ୍ରାଣନାଶ । ୨୯୦ ॥
ବିଭୀଷଣଙ୍କୁ ରାଜ୍ୟ ଦେଇ । ଆମ୍ଭଙ୍କୁ ପୁଷ୍ପକେ ବହାଇ ॥
ଅଯୋଧ୍ୟା ଆସିଲେ ସତ୍ୱରେ । ସ୍ତ୍ରୀରତ୍ନ ସେବକଣ ସଙ୍ଗରେ ॥
ପ୍ରବେଶ ଅଯୋଧ୍ୟା ରାଜ୍ୟରେ । ବଶିଷ୍ଠ ଆଦ ମୁନିବରେ ॥
ରାଜ୍ୟରେ ଅଭିଷେକ କରି । ସର୍ବେ ଚଳିଲେ ନିଜପୁରି ॥
ସୁଖରେ ସୁରାଜ୍ୟ ପାଳନ । ଆନନ୍ଦେ ବିହରନ୍ତି ଜନ ॥
ମୋର କରିବା କାର୍ଯ୍ୟମାନ । ରାମରେ ଆରୋପନ୍ତି ଜନ ॥
ଶ୍ରୀରାମ ନକରେ ଗମନ । ଅଚଳ ପରିଣାମ ହୀନ ॥
ସର୍ବ ଜୀବରେ ସେ ରମଣ । ନାହିଁ ତାହାଙ୍କ ଦୁଃଖକାମ ॥
ଫଳେ କରିବ ବିବେଚନା । ତାଠାରେ ନ ହୁଏ ଘଟଣା ॥
ଯେ ପୂର୍ଣ୍ଣ ବିକାର ରହିତ । ସମ୍ପୂର୍ଣ୍ଣ ମାୟାର ଅତୀତ ॥
ସେହେତୁ ଦ୍ରବ୍ୟ ଅଧିଷ୍ଠାନ । ଭାବ ସେ ଶୋଭା ଦେଖମନ । ୩୦୦

ଶ୍ରୀ ମହେଶ୍ୱର ଉବାଚ ।

ଶଙ୍କରକହିଲେ ଶଙ୍କର । ଶ୍ରୀରାମ ଚରିତ ବିସ୍ତାର ॥
ପବନସୁତ ହନୁମାନ । ଶୁଣ ହେ ଆମ୍ଭର ବଚନ ॥
ଶ୍ରୀରାମକହନ୍ତି ଯେସନ । ଶୁଣହେ ମହା ତତ୍ତ୍ୱଜ୍ଞାନ ॥
ଗୋଟିଏ ଆକାଶ ଅନନ୍ତ । ତ୍ରିବିଧ ଦିଶଇ ଯେମନ୍ତ ॥
ସର୍ବବ୍ୟାପକ ମହାକାଶ । ପ୍ରତ୍ୟେକ ଦ୍ରବ୍ୟରେ ପ୍ରକାଶ ॥
ଜଳାଶୟରେ ଅବଚ୍ଛିନ୍ନ । ତଦ୍ବତ ଜୀବାତ୍ମା ବିଭିନ୍ନ ॥
ଅନାତ୍ମା ପ୍ରତିବିମ୍ବ ସମ । ଏକ ବ୍ରହ୍ମର ତିନି ନାମ ॥
ପ୍ରତିବିମ୍ବ ଯେ ମାୟା ପୂର୍ଣ୍ଣ । ଚୈତନ୍ୟ ତ୍ରିବିଧ ପ୍ରମାଣ ॥
ପୂର୍ବର ସଦୃଶ ଚେତନା । ତିନି ପ୍ରକାରେ ସେ ବର୍ଣ୍ଣନା ॥

ପ୍ରକାଶ ହୁଏ ବିଦ୍ୟଜ୍ଞାନ । ଦେଖ ସକଳ ମୂଢ଼ଗଣ ॥
କର୍ମର କର୍ତ୍ତା ଜ୍ଞାନ ଯାର । ଭ୍ରମରେ ପଡ଼ନ୍ତି ସେ ନର ॥
ଯେ ଜନ ଦେଖେ ମାୟାତିତ । ସେ ନଷ୍ଟେ ସର୍ବାଙ୍ଗ ଚନ୍ଦନ ॥
ଜୀବର ସ୍ୱଭାବ ଅର୍ପଣ । ତାହା ଯେ କରଇ ଧାରଣ ॥
ସତ୍ୟ ବା ମିଥ୍ୟା ଜ୍ଞାନୋଦୟ । ସଦୃଶ ହୋଇବ ନିଶ୍ଚୟ ॥
ମାୟାର କାର୍ଯ୍ୟ ଏ ଅଟଇ । କେତେବେହେଁ ଅନ୍ୟଥା ନୁହଇ ॥
ବ୍ରହ୍ମରେ ଭେଦ ନାହିଁ ପୁଣ । ପୃଥକ ବୋଲି ସର୍ବ ଜାଣ ॥
ଅ[illegible]ନ ଘଟେ ସର୍ବ କ୍ଷଣ । ଏ ମାୟା ଭ୍ରମର କାରଣ ॥
ପୂର୍ଣ୍ଣବ୍ରହ୍ମରେ ଭେଦଜ୍ଞାନ । ଖଣ୍ଡଇ ତତ୍ତ୍ୱ ମତିଭ୍ରମ ॥
ସଦୃଶ ପୂର୍ଣ୍ଣ ବ୍ରହ୍ମସଙ୍ଗେ । ଅନ୍ୟଥା ନୋହେ ମିଳ ଯୋଗେ
ଏଥିରୁ ଶ୍ରେଷ୍ଠ ବୁଦ୍ଧିପାର । ଅହଂ ଜ୍ଞାନକୁ ପରିହର ॥
ପୂର୍ବର ବାକ୍ୟକୁ ସ୍ମରଣ । ଈଶରେ ଅଭେଦ ଯେ ଜ୍ଞାନ ॥
ଆପଣା କାର୍ଯ୍ୟର ଅବିଦ୍ୟା । ବିଲୀନ ହୁଏ ସେ ସର୍ବଦା ॥
ଯେ ଭକ୍ତ ଆତ୍ମ ତତ୍ତ୍ୱ ଜାଣେ । ସାଯୁଜ୍ୟ ପାଏ ସେହିକ୍ଷଣେ ॥
ଆତ୍ମ ବିମୁଖ ଯେଉଁ ଭକ୍ତ । କିମ୍ବା କୂପରେ ସେ ପତିତ ॥
ଅଜ୍ଞାନ ପରେ ସତ ଜନ୍ମ । ନ କରେ ଲଭ ମୋକ୍ଷ ଜ୍ଞାନ ॥
ହେ ଭକ୍ତବର ତୁମ୍ଭେ ଶୁଣ । ସକଳ ଆତ୍ମାର କାରଣ ॥
ମନର କୌତୁକ ଅନ୍ତର । ସମକ୍ଷେ କହିଲୁ ତୁମ୍ଭର ॥
ଇନ୍ଦ୍ରାଜିତ୍ୱ ଠାରୁ ଗରୁ । ଅଭକ୍ତେ ପ୍ରକାଶ ନ କରୁ ॥
ଶିବ କହନ୍ତି ଦେବି ଶୁଣ । ଗୋପନୀୟ ଏ ରାମାୟଣ ॥
ବର୍ଣ୍ଣିଲା ତୁମ୍ଭର ନିକଟେ । ରାମ କହନ୍ତି ଅଙ୍କପଟେ ॥
କହନ୍ତି ନାହିଁ କି ସଂଶୟ । ବେଦାନ୍ତ ଶାସ୍ତ୍ର ସମୁଦୟ ॥
ଶ୍ରୀରାମ କହନ୍ତି ବଚନ । ଅଜ୍ଞାନ କରିବେ ପଠନ ॥
ମୁକ୍ତି ହୋଇବେ ନରବରେ । ବ୍ରହ୍ମହତ୍ୟାଦି ପାପୁତରେ ॥
ବହୁଜନ୍ମର ଯୟ ପାପ । ନଷ୍ଟେ ହୋଇବ ସେ କଳାପ ॥

ବ୍ରହ୍ମ ହତ୍ୟାଦି ପିତୃବଧ । ଭସ୍ମ ହୁଅଇ ମାତୃବଧ ॥
ଯୋଗିମାନଙ୍କ ଯୋଗଧ୍ୟାନ । ଯେ କରେ ବିଘ୍ନ ଆଚରଣ ॥
ପୂଜା କରିବ ରାମପାଦେ । ଭକ୍ତିରେ ଗୀତା ପଢ଼ି ହୃଦେ ॥
ଯୋଗୀ ଯେ ପଦକୁ ନ ପାଏ । ଅଭୟ ପଦପ୍ରାପ୍ତ ହୁଏ ॥
ଶ୍ୟାମଚରଣ ଦୀନହୀନ । ସେ ପଦେ ସଦା ରହୁ ମନ ॥

ଇତି ଶ୍ରୀ ବ୍ରହ୍ମାଣ୍ଡପୁରାଣେ ଉତ୍ତରଖଣ୍ଡେ ଶ୍ରୀମଦଧ୍ୟାତ୍ମରାମାୟଣେ
ଉମାମହେଶ୍ୱର ସମ୍ବାଦେ ବାଳକାଣ୍ଡେ ପ୍ରଥମୋଽଧ୍ୟାୟଃ ।

## ଦ୍ୱିତୀୟ ଅଧ୍ୟାୟ ।

ପାର୍ବତ୍ୟୁବାଚ ।

ଦେବୀ କହନ୍ତି ବିଶ୍ୱନାଥ । କୃପା କରିଣ ଭୂତ ସତ ॥
ବିଷମ ସଂଶୟ ଅନ୍ତର । ଦୂରକର ହେ ମହେଶ୍ୱର ॥
ଧନ୍ୟ ହୋଇଲୁ ତାହା ଶୁଣି । ରାମ ଚରିତ ସୁଧାବାଣୀ ॥
ଶ୍ରୀରାମଚନ୍ଦ୍ର ତତ୍ତ୍ୱ ଜ୍ଞାନ । ମୋକ୍ଷ ଦାୟକ ସୁଧାପାନ ।
ହେ ନାଥ ସୁକୋମଳ ବାଣୀ । ତୃପ୍ତ ହୋଇଲୁ ତାହା ଶୁଣି ॥
ସଂକ୍ଷେପେ କହିଅଛ ନାଥ । ସମ୍ପୂର୍ଣ୍ଣ ଶୁଣିବାରେ ମତ ।

ଶ୍ରୀ ମହାଦେବ ଉବାଚ ।

ଶ୍ରୀରାମ କଥା ସୁବିସ୍ତାରେ । ତୁମ୍ଭର ଇଚ୍ଛା ଶୁଣିବାରେ ॥
ଏହାର ତୁଲ୍ୟ ଗୋପନୀୟ । ସଂସାରେ ନାହିଁ ଦର୍ଶନୀୟ ।
ସର୍ବଦା ତ୍ରିତାପ ବିନାଶ । ତୋ ଆଗେ କରିବୁ ପ୍ରକାଶ ॥
ଏ ବଡ଼ ଆଶ୍ଚର୍ଯ୍ୟ ଚରିତ । ଆମ୍ଭ ଆଗରେ ରଘୁନାଥ ।
ପ୍ରକାଶ କରିଛନ୍ତି ଯାହା । ଶୁଣ କହିବୁ ଆମ୍ଭେ ତାହା ॥
ଶୁଣିଲେ ଜୀବଗଣମାନ । ଅବିଦ୍ୟା ଭୟୁ ହୁଏ ତ୍ରାଣ ॥
ଦୀର୍ଘ ଜୀବତ ହୁଏ ରଙ୍ଗେ । ସନ୍ତାନ ବଢ଼େ ତାର ସଙ୍ଗେ ॥
ପରମପଦ ପାଏ ସେହୁ । ଐଶ୍ୱର୍ଯ୍ୟ ଭୋଗ କେତେ କହୁ ।
ଏକ କାଳରେ ବସୁମତୀ । ଶଙ୍କା ହରଣ ମନେ ଅତି ॥

ଦଶାନନଙ୍କୁ ଭୟଙ୍କର । ଭାରରେ ଗୋରୁ ରୂପଧର ।
ଦେବତା ମୁନିଗଣ ସଙ୍ଗେ । ବ୍ରହ୍ମଲୋକକୁ ଗଲେ ବେଗେ ।
ବ୍ରହ୍ମାର ନିକଟେ ମିଳିଲେ । ସକଳ ଦୁଃଖ ଜଣାଇଲେ ॥
ଆତ୍ମ ସ୍ୱରୂପେ ସର୍ବ ଯିବେ । ବସ୍ୱଜକର ଶୁଦ୍ଧି ଭାବେ ॥
ବୁଝିଲେ ନିଜ ଚିନ୍ତାବଳେ । ଦେବତାମାନଙ୍କର ମେଳେ ॥
ଚଳିଲେ କ୍ଷୀର ପାରାବାରେ । ନାରାୟଣଙ୍କ ନିକଟରେ ।
ବେଦମତରେ ବାର ବାର । କରିଲେ ସ୍ତବ ନମସ୍କାର ॥
ସ୍ତ[illegible]ରିଲେ ଦ୍ୱୋପନ । ପ୍ରେମେ ଗଦ୍ଗଦ ମୁନିମନ ॥
ଶରୀର ଭାଷି ତତକ୍ଷଣ । ଦେଖିଲେ ଅଖିଳ କାରଣ ।
ହରିବେ ପୃଥ୍ୱୀର ଭାର । କରିବେ ଜୀବଙ୍କୁ ନିସ୍ତାର ।
କାରଣ ଏହି ପ୍ରୟୋଜନ । ସ୍ତବ କରନ୍ତି ପଦ୍ମାସନ ।
ସ୍ତବ ଶୁଣିଲେ ନାରାୟଣ । ତମ ସମୂହ ନିବାରଣ ॥
ପୂର୍ବଦିଗରେ ସେ ଉଦୟ । ଉଶ୍ୱାସ ପୃଥ୍ୱୀଙ୍କ ନିଶ୍ଚୟ ।
ସେ ରୂପ ଦେଖିବାରେ ନାହିଁ । ସହସ୍ର ରବି ତେଜ ହୋଇ ॥
ମୂଢ଼ଲୋକଙ୍କୁ ଅଗୋଚର । ଜ୍ଞାନୀ ଦେଖନ୍ତି ନିର୍ବିକାର ।
ବିରିଞ୍ଚି ଦେଖିଲେ ସେ କ୍ଷଣି । ସମାନଇନ୍ଦ୍ର ନୀଳମଣି ॥
ପୂରୁଭ ସହାସ୍ୟ ବଦନ । ହରଷ କମଳଲୋଚନ ॥
କିରୀଟ ଅଙ୍ଗଦ ନୂପୁର । କୁଣ୍ଡଳ ମୁଦ୍ରିକା ସୁହାର ॥
ଶରୀରେ ଭୂଷଣ ତାଙ୍କର । ଜଗତେ ନାହିଁ ପଟାନ୍ତର ॥
ସନକ ଆଦି ମୁନିଗଣେ । ସେବା କରନ୍ତି ଏକମନେ ॥
ଶ୍ରୀବତ୍ସ କୌସ୍ତୁଭ ଶରୀରେ । ପ୍ରଭାରେ ଶୋଭାବୃଦ୍ଧି କରେ ॥
ନଳଣ ଶଙ୍ଖ ଚକ୍ର ଗଦା । ଚତୁର୍ଭୁଜରେ ଶୋଭେ ସଦା ॥
ଧାରଣ ହୃଦେ ବନମାଳ । ସୁନ୍ଦର ଦିଶଇ ଉଜ୍ଜ୍ୱଳ ।
ସୁବର୍ଣ୍ଣ ଯଜ୍ଞ ଉପବୀତ । ତାହାଙ୍କ ଉରରେ ଶୋଭିତ ॥
ପୀତଅମ୍ବର ପରିଧାନ । ସୁନ୍ଦର ମୂର୍ତ୍ତି ଦୁଇଗୁଣ ।

ଗରୁଡ଼ ପୃଷ୍ଠର ଉପରେ । ବସନ୍ତେ ଲକ୍ଷ୍ମୀଙ୍କ ସଙ୍ଗରେ ॥
ସେରୂପ ଦେଖି ପଦ୍ମାସନ । ତନୁ ପୁଲକ କଲେ ମନ ।
ଭାବଗଦ୍ଗଦ ଭକ୍ତିଭରେ । ରଙ୍ଗାଚରଣ ଧରସ୍ଥିରେ ॥
ଧ୍ୟାନେ ବସିଲେ ପଦ୍ମଯୋନି । ସ୍ତୁତି ଆରମ୍ଭ କଲେ ପୁଣି ॥

ବ୍ରହ୍ମୋବାଚ ।

ହେ ଦେବ କହୁଅଛୁ ଶୁଣ । ଭକ୍ତଙ୍କ ମୁକ୍ତିର କାରଣ ॥
ତୁମ୍ଭଚରଣେ ମନପ୍ରାଣ । ନତମସ୍ତକେ ମୁଁ ବନ୍ଦନ ।
ତ୍ରିଗୁଣ ମାୟାମୟ ଯେତେ । ଆଶ୍ରୟ କରନ୍ତି ସମସ୍ତେ ॥
ସୃଷ୍ଟିର ସ୍ଥିତି ଯେ କାରଣ । କର ପାଳନ୍ତି ଧ୍ୱଂସ ଗୁଣ ॥
ବିଧାତା କହିଲେ ଏ ଗୀତ । ମାନ-ଅପମାନ ନାହିଁ ଯାର ॥
ନିକେ ଆପଣ ପୂର୍ଣ୍ଣ ବ୍ରହ୍ମ । ନିତ୍ୟ ଆନନ୍ଦ ସ୍ୱରୂପେଣ ।୫୦।
ତୁମ୍ଭର ଗୁଣାନୁକୀର୍ତ୍ତନେ । ରତ ହୋଇବେ ଭକ୍ତଗଣେ ॥
ଯେରୂପେ ଚିତ୍ତ ଶୁଦ୍ଧ ହୁଏ । ସେ ଭ୍ରାନ୍ତମତି ବ୍ୟକ୍ତି ପାଏ ॥
ଯେ ଦ୍ୱାରା ଦାନ ଅଧ୍ୟୟନ । ବିବିଧ କ୍ରିୟା ପ୍ରକାରେଣ ।
ଲଭି ନ ପାରେ ସେହି ଫଳ । ନୋହିବ ଏ ସାଧ କାହାର ॥
ବହ୍ନିକାଳର ତପଫଳେ । ମୁନିମାନଙ୍କ ହୃଦୟରେ ॥
ଚରଣ ଦର୍ଶନ କରନ୍ତି । ଧ୍ୟାନାନନ୍ଦରେ ସେ ଜାଣନ୍ତି ॥
ଯେ ଜ୍ଞାନଗଣ ଦେହବାରେ । ସର୍ବ ଲକ୍ଷଣ ହୃଦ୍ଦ୍ୱାରେ ॥
ତୁମ୍ଭ ଚରଣ ଧରି କରେ । ବେଷ୍ଟିତ ବୈଷ୍ଣବ ସକଳେ ॥
ମନଅର୍ଥ ସିଦ୍ଧିର କାରଣ । କେ ତାହା କରିବ ଗଣନ ॥
ଯେ ଅବା କରିଛନ୍ତି ଯେତେ । ତାହା ମୁଁ କହିବ କେମନ୍ତେ ॥
ତୁମ୍ଭର ଗୁଣ ଭଗବାନ । ଯେ ଧରେ ତୁମ୍ଭର ଚରଣ ॥
ଦନର ମାଦନ ଆମ୍ଭର । ଶୁଣ ହେ ବୈକୁଣ୍ଠ ଠାକୁର ॥
ତାହା କେ କରିବ ଭୁକଣା । ଦୃଷ୍ଟିର ଦୂରନ୍ତୁ ଏ ସିନା ॥
ହେ ପ୍ରଭୁ ମୋର ନିବେଦନ । ଲକ୍ଷ୍ମୀଙ୍କୁ ବକ୍ଷରେ ଧାରଣ ।

ବନ୍ଦନ କରି ସର୍ବକ୍ଷଣେ । ନିବେଦୀ ତୁମ୍ଭଙ୍କ ଚରଣେ ॥
କବା ମାହାତ୍ମା ଏ ବଚନ୍ତ । ଭକ୍ତ ଏ ଭୁଲିପିର ପନ୍ତ ॥
କମଳା ଦେଖିଣ ସେ ଭାବ । ପ୍ରକାଶ କରେ ଈର୍ଷାଭାବ ॥
ସପତ୍ନୀ ଭାବ ଭାବ ମନେ । ସେ ଯେ ସକଳ ଭକ୍ତଗଣେ ॥
ଏକାନ୍ତେ ତୁମ୍ଭର ଚରଣ । ଆଶ୍ରୟ କରେ ସର୍ବକ୍ଷଣ ।
ଭକ୍ତଙ୍କ ଦେଖି ସେହିଗୁଣ । ଉତ୍ତମ ବାସନ୍ତି ଆପଣ ।୭୦।
ଲକ୍ଷ୍ମୀ ଦେଖିଣ ଚମତ୍କାର । ଏ ଯୋଗୁଁ ବେଦେ କ୍ଷୀଣାବର ॥
ଭ[illegible]ାବନ୍ତ ନିରନ୍ତରେ । ଇଚ୍ଛାକରନ୍ତି ବାରେ ବାରେ ॥
କ୍ରୋଧରେ ସଂତପ୍ତ ଯେ ଜନ । ଭକ୍ତି ନ ପାଏ ସର୍ବକ୍ଷଣ ॥
ତାହାର ଭକ୍ତି ନିବାରଣ । କହି ତୋଷିଲେ ପ୍ରାଣୀମନ ॥
ଏ ହେତୁ ପଦ ପାଇବାକୁ । ପ୍ରାର୍ଥନା କରୁଛି ତୁମ୍ଭଙ୍କୁ ।
ଯୁଗଳ ଚରଣ ତୁମ୍ଭର । ମୋ ମନ ରହୁ ନିରନ୍ତର ॥
ବ୍ରହ୍ମାର ସ୍ତବ ଶୁଣି ହରି । ସନ୍ତୁଷ୍ଟ ହୋଇଲେ ମୁରାରି ।
କି କାର୍ଯ୍ୟେ କଲ ଆଗମନ । କରିବୁ ନିଶ୍ଚେ ଏହିକ୍ଷଣ ।
ବ୍ରହ୍ମା କହିଲେ ଦେବ ଶୁଣ । ବିସର୍ବା ସୁତ ଦଶାନନ ॥
ରାକ୍ଷସମାନଙ୍କ ଉପରେ । ଅତି ଦର୍ପିତ ଆମ୍ଭ ବରେ ।୮୦।
ତ୍ରିଲୋକ ପ୍ରାଣୀ ପୀଡ଼ାକରେ । ସଂସାରେ କାହାକୁ ନ ଡରେ ॥
ଅତ୍ୟନ୍ତ ଦୁଷ୍ଟ ଦୁରାଚାର । ନରେଶମାନଙ୍କ ଉପର ।
ବିଶେଷ ଅତ୍ୟାଚାର କରେ । ଭାବନା ନ କରେ ଅନ୍ତରେ ॥
ଏ ଯୋଗୁଁ କହୁଅଛୁ ମୁହିଁ । ବଧ ତାହାର ଭାବଗ୍ରାହୀ ॥
ନର ହସ୍ତରେ ମୃତ୍ୟୁ ତାର । ଘଟାଅ ପ୍ରଭୁ ବିଶ୍ୱମ୍ଭର ॥
ଏ କଥା ସ୍ଥିର କର ଆମ୍ଭେ । ତ୍ରିଲୋକ ସ୍ୱାମି ଅଟ ତୁମ୍ଭେ ॥
ନର ରୂପରେ ଅବତାର । ସତ୍ୱର ନାଶ ଦଶଶିର ।
ସଂସାର ଦୁଃଖ ଦୂରହର । ଆମ୍ଭ ପ୍ରାଣକୁ ରକ୍ଷାକର ॥
ବଧ ହୋଇବ ଶରଖାର । ଯେବେ ହୋଇବ ଚକ୍ରଧର ॥

## ଶ୍ରୀ ଭଗବାନୁବାଚ ।

ବିଷ୍ଣୁ କହିଲେ ଶୁଣ ଧାତା । ପୂର୍ବେ କଶ୍ୟପ କରି ଚିନ୍ତା ॥
କଠୋର ତପ ଆରମ୍ଭିଣ । ଆମ୍ଭଙ୍କୁ ବଶ କରି ପୁଣ ॥
ସେ ତପେ ଆମ୍ଭେ ଦେଲୁ ବର । ତୃପ୍ତିକରିଲୁ ବାଞ୍ଛା ତାର ॥
ପ୍ରାର୍ଥନା କଲେ ସେ କଶ୍ୟପ । ପୁତ୍ର ହୋଇବ ଆମ୍ଭ ରୂପ ॥
ସନ୍ତୁଷ୍ଟ ହୋଇ ସେହି ବର । ତଥାସ୍ତୁ କହିଲୁ ସତ୍ୱର ॥
କଶ୍ୟପ ବରେ ଦଶରଥ । ଅଯୋଧ୍ୟା ରାଜ୍ୟେ ନରନାଥ ॥
ପୃଥ୍ୱୀରେ କରନ୍ତି ବିହାର । ପୁତ୍ର ହୋଇବୁ ଆମ୍ଭେ ତାର ॥
ଜନମ ହେବୁ ତାର ଘରେ । ସନ୍ଦେହ ନ କର ମନରେ ॥
କୌଶଲ୍ୟା କୈକେୟୀ ସୁମିତ୍ରା । ଏ ତିନରାଣୀ ସୁପବିତ୍ରା ॥
ଜନମ ଏହାଙ୍କ ଗର୍ଭରେ । ହୋଇବୁ ଚତୁର ଅଂଶରେ ॥
ଆମ୍ଭର ମାନସ ଅଧିନୀ । ହୋଇବ ଜନକନନ୍ଦିନୀ ॥
ସୀତା ରୂପରେ ଜନମିବେ । ଆମ୍ଭର ପତ୍ନୀ ସେ ହୋଇବେ ॥
ସକଳ କାର୍ଯ୍ୟ ସମ୍ପାଦନ । କରିବୁ ଭାବିଅଛୁ ମନ ॥
ଏ କଥା କହି ନାରାୟଣ । ତତ୍‌କ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ବ୍ରହ୍ମା କହିଲେ ଦେବଗଣ । ଶୁଣ ହେ ଆମ୍ଭର ବଚନ ॥
ରଘୁବଂଶରେ ଅନ୍ତର୍ଯ୍ୟାମୀ । ମାନବ ରୂପରେ ଜନମି ॥
ଯେ ଦିନ ଯାଏ ଧରାତଳେ । ରହିବେ ପ୍ରଭୁ ଲୀଳାଚଳେ ॥
ସେ ଦିନଯାଏ ତୁମ୍ଭେମାନେ । ରହିବ ତାଙ୍କ ସନ୍ନିଧାନେ ॥
ନିଜ ଅଂଶରେ ରୂପ ହେର । ଜନ୍ମିବ କପି ରୂପଧରି ॥
ତାହାଙ୍କୁ ସହାୟ ହୋଇବ । ତୋଷ ହୋଇଲେ ସର୍ବ ଦେବ ॥
ପୃଥ୍ୱୀକୁ ଆଶ୍ୱାସି ଆବର । ଅସ୍ଥିର ମନ କଲେ ସ୍ଥିର ॥
ବ୍ରହ୍ମଲୋକକୁ ପଦ୍ମାସନ । ଆପଣେ କରିଲେ ପ୍ରସ୍ଥାନ ॥
ଦେବତାଗଣ ପରସ୍ପରେ । ଅଧିକ ବିଳମ୍ବ ନ କରେ ॥
ଜନମ ହେଲେ ରସାତଳେ । ସୁରଗଣ ଯେ ତଦନ୍ତରେ ॥

ପାଦପ ପଙ୍କଜଉପରେ । ବଳଷ୍ଟୁ ହୋଇଣ ବାନରେ ॥
ଚାହିଲେ ଅତି ଆଶା ଭରେ । ବିଷ୍ଣୁ ସାହାଯ୍ୟ ଅପେକ୍ଷାରେ ॥
ଶ୍ୟାମଚରଣ କହେ ଗିର । ରାମ ଚରଣ ଧରି ଶିର ।୯୧୭।

ଇତି ଶ୍ରୀବ୍ରହ୍ମାଣ୍ଡପୁରାଣେ ଉତ୍ତରଖଣ୍ଡେ ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ ବାଲକାଣ୍ଡେ ନାମୋ ଦ୍ୱିତୀୟୋଽଧ୍ୟାୟଃ ।

—❊ ❊ ❊—

## ତୃତୀୟ ଅଧ୍ୟାୟ ।

ଶ୍ରୀ ମହାଦେବଉବାଚ ।

ସୂର୍ଯ୍ୟବଂଶରେ ଦଶରଥ । ଅଯୋଧ୍ୟାରାଜ୍ୟେ ନରନାଥ ॥
ଶାସ୍ତ୍ରଗଣ୍ୟ ସତ୍ୟଯୁକ୍ତ । ଧାର୍ମିକ ସୁଜ୍ଞାନୀ ପଣ୍ଡିତ ॥
ସକଳ ତୀର୍ଥ ସୁବିମଳ । ପ୍ରଭୁ ବିସ୍ତାର ଭୂମଣ୍ଡଳ ॥
ପୁତ୍ରହୀନର ଅନୁଚିନ୍ତା । ବଶିଷ୍ଠେ କହିଲେ ସେ କଥା ॥
ମୁନିଚରଣେ ନମସ୍କାର । କପରୁ ପାଇବୁଁ କୁମର ॥
ଅପୁତ୍ର ଦୁଃଖର କାରଣ । ଅନ୍ତରେ ନରକେ ପତନ ॥
ବଶିଷ୍ଠ ମୁନି ଏହା ଶୁଣି । କହିଲେ ରାଜାଙ୍କୁ ବଖାଣି ॥
ସୁଲକ୍ଷଣରେ ପୁତ୍ର ତୁମ୍ଭେ । ପାଇବ କହୁଅଛୁଁ ଆମ୍ଭେ ॥
ଅତିବଳଷ୍ଟ ଗୁଣଜଣ । ଜନ୍ମିବେ ତୁମ୍ଭର ସଦନ ॥
ଋଷ୍ୟଶୃଙ୍ଗଙ୍କ ସଙ୍ଗତରେ । ଆମ୍ଭଙ୍କୁ ନିଯୋଗ ଯଜ୍ଞରେ ।୧୦।
ପୁତ୍ର ଅର୍ଥେ ଯଜ୍ଞ କର । ନିଶ୍ଚୟ ପାଇବ କୁମର ॥
ଏ କଥା ଦଶରଥ ଶୁଣି । ଋଷ୍ୟଶୃଙ୍ଗଙ୍କୁ ବେଗେ ଆଣି ॥
ମୁନିଙ୍କ ଆଜ୍ଞା ଶିରେ ଧରି । ସର୍ବସମ୍ମତେ ଦଣ୍ଡଧାରୀ ॥
ପାତ୍ରମନ୍ତ୍ରୀଙ୍କ ପରାମର୍ଶେ । ଯଜ୍ଞ ଆରମ୍ଭ କଲେ ହର୍ଷେ ॥
ବଶିଷ୍ଠ ଆଦି ମୁନି ଯେତେ । ଯଜ୍ଞେ ବରଣ ସେ ସମସ୍ତେ ॥
ଭକ୍ତିରେ ଆହୁତି ପ୍ରଦାନ । ସନ୍ତୋଷେ କରିଲେ ରାଜନ ॥
ସୁବର୍ଣ୍ଣବର୍ଣ୍ଣେ ଅଗ୍ନି ଉଠି । ପାୟସ ନେଲେ ସ୍ୱର୍ଣ୍ଣବାଟି ।

ହସ୍ତେ ଧରଣ ହୁତାଶନ । ରାଜାଙ୍କୁ କହିଲେ ଏସନ ॥
ପାୟସ ଦିବ୍ୟ ପୁଷ୍ଟରୂପ । ଶ୍ରଦ୍ଧାରେ ହସ୍ତେ ନିଅ ନୃପ ॥
ଏହାର ପ୍ରଭାବେ ରାଜନ । ବଣ୍ଟୁକୁ ପାଇବେ ସନ୍ତାନ ।୨୦।
ପୁତ୍ର ରୂପରେ ଜନମିବେ । ବାଞ୍ଛା ତୁମ୍ଭର ପୂରାଇବେ ॥
ପାୟସ ରାଜା ହସ୍ତେ ଦେଲେ । ଅନଳ ଅନ୍ତର୍ଦ୍ଧାନ ହେଲେ ।
ଅଭୀଷ୍ଟ ପୂର୍ଣ୍ଣ ସେ ରାଜନ । ଆନନ୍ଦ ସାଗରେ ମଗନ ॥
ବଶିଷ୍ଠ ଋଷ୍ୟଶୃଙ୍ଗ ମୁନି । ତୋଷିଲେ ରାଜା ମହାଜ୍ଞାନୀ ॥
ସମସ୍ତ ଚରଣ ବନ୍ଦିଲେ । ତପୂରେ ଅନୁମତ ନେଲେ ॥
ଚରୁକୁ ଦୁଇ ଭାଗକରି । ରାଜା ଚଳିଲେ ଅନ୍ତଃପୁରୀ ॥
ଭାଗେକ ଦେଲେ କୌଶଲ୍ୟାରେ । ଅପରଭାଗ କୈକେୟୀରେ ॥
ସୁମିତ୍ରା ରାଣୀ ତାହା ଦେଖି । ଭାବିଲା ମନେ ହୋଇ ଦୁଃଖୀ ॥
ଚରୁ ଭକ୍ଷିବେ ତାଙ୍କ ଇଚ୍ଛା । କରି ସେ ଥିଲେ ମନେ ବାଞ୍ଛା ॥
ଦେଖିଣ କୌଶଲ୍ୟା କୈକେୟୀ । ନିଜ ଚରୁକୁ ବାଣ୍ଟିଦେଇ ।୩୦।
କୌଶଲ୍ୟା ଚରୁ ଅର୍ଦ୍ଧେ ଦେଲେ । କୈକେୟୀ ଅର୍ଦ୍ଧେ ସମର୍ପିଲେ ॥
ସକଳେ ଚରୁକୁ ଭକ୍ଷିଲେ । ମନରେ ଆନନ୍ଦ ହୋଇଲେ ॥
ଅଳ୍ପ ସମୟେ ତିନିରାଣୀ । ଗର୍ଭ ସଞ୍ଚାରେ ସୁଖି ପୁଣି ।
ଗର୍ଭଧାରଣ ସୁବସ୍ତାର । ଦଶାନ୍ତ ଦେବୀର ଆକାର ॥
ଅତୀତ ହେଲା ନବମାସ । ଦଶମ ମାସ ସୁପ୍ରକାଶ ।
କୌଶଲ୍ୟା ଦେବୀ ଗର୍ଭକଷ୍ଟ । ଶୁଖିଲା ଦନ୍ତ ତାଳୁ ଓଷ୍ଠ ॥
ମଧୁ ମାସରେ ଶୁକ୍ଳପକ୍ଷ । ନବମୀ ପୁନର୍ବସୁ ଋକ୍ଷ ॥
କର୍କଟ ଚନ୍ଦ୍ର ସେହିଦିନ । ଉଚ୍ଚରେ ପଞ୍ଚଗ୍ରହ ପୁଣ ।
ମେଷ ରାଶିରେ ଦିବାକର । ନକ୍ଷତ୍ରଗଣ ବଳଯୁର ॥
ସେହିଦିନ ସମପୂ ମଧ୍ୟାହ୍ନ । ତେଜିଲେ ବୈକୁଣ୍ଠ ଭୁବନ ।୪୦।
ପରମ ଜ୍ୟୋତି ନାରାୟଣ । ଯେ ଅଧିପତି ତ୍ରିଭୁବନ ॥
ନାନାରୂପେ ଅବରୂଢ଼ । କୌଶଲ୍ୟା ଗର୍ଭୁ ହେଲେ ଜାତ ॥

ସୁବର୍ଣ୍ଣ ବର୍ଣ୍ଣେ ପରିଧାନ । ମସ୍ତକେ କିରୀଟ ଭୂଷଣ ॥
ଗଦାଚକ୍ର ଶଙ୍ଖ ସୁଦର୍ଶନ । ଚତୁର୍ଭୁଜରେ ଶୋଭମାନ ॥
ଗଳେ ଭୂଷଣ ବନମାଳ । ଭୃଗୁ ଚିହ୍ନ ଦେଖିଲେ ଅଦଭୁତ ॥
ମୁନିଙ୍କ ହୃଦୟ ପ୍ରଫୁଲ୍ଲ । ଆକାଶୁ ବୃଷ୍ଟି ହେଲା ଫୁଲ ॥
ନୀଳଉତ୍ପଳଶ୍ୟାମ କାନ୍ତ । ସହସ୍ର ସୂର୍ଯ୍ୟ ପ୍ରାୟ ଜ୍ୟୋତି ॥
ତାହାଙ୍କ କେଶ ସୁକୁଞ୍ଚିତ । ନୟନ ଉତ୍ପଳ ବିସ୍ତୃତ ॥
କରୁଣାରସେ ପରିପୂର୍ଣ୍ଣ । ଈଷତ ନେତ୍ର ରକ୍ତବର୍ଣ୍ଣ ॥
ଶ୍ରୀହସ୍ତ କେୟୂର ନୂପୁର । ଶ୍ରୀଅଙ୍ଗେ ଭୂଷଣ ସୁନ୍ଦର ।୫୦।
ଭକ୍ତର ପ୍ରତି ମୂର୍ତ୍ତିଦୟା । ଅକାଶ ସମ ନାହିଁ ମାୟା ॥
ଚନ୍ଦ୍ର ରଶ୍ମିର ପ୍ରାୟ ହର୍ଷ । ଅତମଧ୍ୟର ସୁପ୍ରକାଶ ॥
ପୂର୍ବ ରୂପରେ ନାରାୟଣ । କୌଶଲ୍ୟା ହର୍ଷ ବିସ୍ମୟେଣ ॥
ନୟନ ଭରେ ହର୍ଷବାର । ପ୍ରଣମି ଯୋଡ଼ି ହାତକର ॥

କୌଶଲ୍ୟୋବାଚ ।

ହେ ପ୍ରଭୁ ଦେବର ଦେବତା । ତୁମ୍ଭେ ସର୍ବଙ୍କ ଜନ୍ମଦାତା ॥
ଅନନ୍ତ ପୁରୁଷ ଉତ୍ତମ । ମୂର୍ତ୍ତିଭାବରେ ଏହିକ୍ଷଣ ॥
ଦେଖିଲି ଚରଣ ତୁମ୍ଭର । ପ୍ରଣତ ଭାବେ ନମସ୍କାର ॥
ବେଦ ପଣ୍ଡିତ ସର୍ବଜନେ । ସ୍ୱଚକ୍ଷେ ତର୍କେ ଦରଶନେ ॥
ଇନ୍ଦ୍ରିୟାତୀତ ଜ୍ଞାନମୟେ । ପଦାର୍ଥ ମାତ୍ରେ ଅଂଶ ଥାଏ ॥
ମାୟା ଅତୀତ ମୂର୍ତ୍ତିବ୍ରହ୍ମ । ବ୍ରହ୍ମାଙ୍କଠାରେ ରଜ ଗୁଣ ।୬୦।
ବିଷ୍ଣୁଙ୍କଠାରେ ସତ୍ୟ ଗୁଣ । ରୁଦ୍ର ରୂପରେ ତମୋ ଗୁଣ ॥
ଏରୂପେ ପାଳନ ବିନାଶ । ସୃଷ୍ଟି ତୁ କରୁ ଶ୍ରୀନିବାସ ॥
କର୍ତ୍ତା ତୁ ନ କରୁ କରମ । ନଳିନୀ ଦଳେ ଜଳସମ ॥
ଶ୍ରୋତା ତୁ ନ କରୁ ଶ୍ରବଣ । ଦର୍ଶକ ନ କରୁ ଦର୍ଶନ ॥
ପ୍ରଣବ ଆଦି ବାକ୍ୟଶୂନ୍ୟ । ବେଦର ସିଦ୍ଧାନ୍ତ ବଚନ ॥
ସେଣୁ ତୁ କାର୍ଯ୍ୟ ଗତିହୀନ । ପଣ୍ଡିତେ ବଦେ ସର୍ବକ୍ଷଣ ॥

ପବିତ୍ର ଗୁଣାନୁକୀର୍ତ୍ତନ । ଭାବ ନ ଜାଣେ ସର୍ବଜନ ॥
ସର୍ବଭୂତରେ ଅଧିଷ୍ଠାନ । ନ ଦେଖି ତମୋଽନ୍ଧ ନୟନ ॥
ଯେ ତତ୍ତ୍ୱ ଜ୍ଞାନବ୍ୟକ୍ତିଗଣ । ସର୍ବଦା ପ୍ରତ୍ୟକ୍ଷ ଦର୍ଶନ ॥
ଅନନ୍ତ ବ୍ରହ୍ମାଣ୍ଡ ତୋହର । ଜଠରେ ପରମାଣୁ ତୁଲ୍ୟ ।୭୦।
ମୋ ଗର୍ଭେ ଜନମ ଗ୍ରହଣ । ଜଗତେ ମାହାତ୍ମ୍ୟ ବର୍ଦ୍ଧନ ॥
ଭକ୍ତ ଅଧୀନ ନାରାୟଣ । ପ୍ରତ୍ୟକ୍ଷେ କଲ ଦରଶନ ॥
ମାୟାର ବଶ ପୁତ୍ର କନ୍ୟା । ସଂସାରେ ଭ୍ରମି ଧନମନା ॥
ଭ୍ରମି ଭ୍ରମିଣ ନାରାୟଣ । ପାଇଛୁ ନ ଛାଡ଼େ ଚରଣ
ଏ ତମୋମୟ ଚରାଚର । ନାରିପଦରେ ଦେବ ପାର ॥
ଏ ରୂପ ଦେଖି ମନ୍ତ୍ରମଛ । ସଦା ଅନ୍ତରେ ଭାବେ ଅଛ ॥
ତୁମ୍ଭର ଅଚୈତନ୍ୟ ଶକ୍ତି । ମୋହିତ ନ କରେ ସମ୍ପ୍ରତି ॥
ସଚ୍ଚିଦାନନ୍ଦ ସ୍ୱରୂପ । ଧାରଣ କର ମାୟାରୂପ ॥
ଏ ତେଜ ମୂର୍ତ୍ତି ପରିହର । କୋମଳ ବାଳ ରୂପ ଧର ॥
ଆଦରେ କରି ଆଲିଙ୍ଗନ । ପବିତ୍ର ଦେହ ପ୍ରାଣମନ ।୮୦।

ଶ୍ରୀଭଗବାନୁବାଚ ।

ରାମ କହନ୍ତି ମାଗୋ ଶୁଣ । ନ କର ଅନ୍ୟମତ ମନ ॥
ହରିବୁଁ ପୃଥିବୀର ଭାର । ବଧିବୁଁ ନିଶ୍ଚେ ଦଶଶିର ॥
ବ୍ରହ୍ମ ପ୍ରାର୍ଥନେ ଅଙ୍ଗୀକାର । କରିବୁଁ କହନ୍ତୁଁ ସତ୍ୱର ॥
ଦୁଷ୍ଟ ରାବଣ ବଧିବାକୁ । ଧରିଛୁ ମାନବ ରୂପକୁ ॥
ପୂର୍ବେ ତୁ ଦଶରଥ ସଙ୍ଗେ । କଠୋର ତପସ୍ୟା ସରାଗେ ॥
ଆମ୍ଭଙ୍କୁ ପୁତ୍ର ପ୍ରାପ୍ତିମନେ । ତପସ୍ୟା କଲ ବେନିଜନେ ॥
ପୂରିଲା ତୁମ୍ଭର ବାସନା । ଏବେ ନ ହୁଅ ଅନ୍ୟମନା ॥
ତପସ୍ୟାହୀନ ମୂଢ଼ଗଣ । ନ ପାଏ ଆମ୍ଭ ଦରଶନ ॥
ପୂର୍ବଜନ୍ମର ତପଫଳେ । ମୋ ମୂର୍ତ୍ତି ଦେଖିଲ ସ୍ୱଚ୍ଛୋଳେ ॥
ଶୁଣ ଗୋ ମାତ ମୋ ବଚନ । ପଢ଼ିବେ ଶୁଣିବେ ଯେ ଜନ ।୯୦।

ମୃତ୍ୟୁକାଳରେ ସୁମରଣ । ପାଇବେ ସାଯୁଜ୍ୟ ତକ୍ଷଣି ॥
ଶ୍ରୀରାମ କହି ଏ ବଚନ । ସାମାନ୍ୟ ଶିଶୁର ସମାନ ॥
ମୂରତି କରିଲେ ଧାରଣ । ଆରମ୍ଭ କଲେକ ରୋଦନ ॥
ନବ ମରକତ କାନ୍ତି ସମ । ସୁନ୍ଦର ବିଶାଳ ନୟନ ॥
ଇନ୍ଦ୍ରଦେବତା ଅଦ୍ଦ ଯେତେ । ଆନନ୍ଦ ହୋଇଲେ ସମସ୍ତେ ॥
ଦେଖିବା ସ୍ୱରୂପ ସୁନ୍ଦର । ବାଳାର୍କ ପ୍ରଭା ସେ ବିସ୍ତାର ॥
ରାଜା ଶୁଣିଲେ ପୁତ୍ର ଜନ୍ମ । ଆନନ୍ଦ ସାଗରେ ମଗନ ॥
ବଶିଷ୍ଠ ମୁନିଙ୍କ ସଙ୍ଗରେ । ହର୍ଷେ ଚଳିଲେ ଦେଖିବାରେ ॥
ସେ ପଦ୍ମପଳାଶ ଲୋଚନ । ନୃପତି ସଜଳ ନୟନ ॥
ଗୁରୁସାହାଯ୍ୟ ନେଲେ ପୁଣ । ପୁତ୍ରଙ୍କ ଜାତ କର୍ମପର୍ଣ୍ଣ ।୧୦୮।
କୈକେୟୀ କଲେ ପୁତ୍ରଜାତ । କମଳ ନୟନ ଭରତ ॥
ସୁମିତ୍ରା ଦେବୀ ଅନ୍ତଃପୁରେ । ଯମଜପୁତ୍ର ଜାତକଲେ ॥
ଅତି ପ୍ରଫୁଲ୍ଲ ସେ ବଦନ । ପୂର୍ଣ୍ଣେନ୍ଦୁ ସମାନ ଆନନ ॥
ରାଜାଙ୍କ ପୁଲକିତ ମନ । ବ୍ରାହ୍ମଣେ ଦେଲେ ଗୋରୁଦାନ ॥
ଅନେକ ବସ୍ତ୍ର ବହୁଗ୍ରାମ । ଆବର ସ୍ୱର୍ଣ୍ଣ ରତ୍ନମାନ ॥
ଶ୍ରୀରାମଚନ୍ଦ୍ର ଦେହ କାନ୍ତି । ତ୍ରିଭୁବନେ ଝଟକନ୍ତି ॥
ତାଙ୍କ ସମ ତତ୍ତ୍ୱଜ୍ଞାନ । ସେ ନାହି କରବେ ରମଣୀ ॥
ବଶିଷ୍ଠ ଋଷି ତପୋଧନ । ଜ୍ୟେଷ୍ଠ ପୁତ୍ରର ରାମନାମ ॥
ଭରତ କୈକେୟୀ ନନ୍ଦନ । ଭରତ ନାମ ଦେଲେ ପୁଣ ॥
ସୁମିତ୍ରା ଦେବୀଙ୍କ ସନ୍ତାନ । ସର୍ବ ଲକ୍ଷଣେ ପରିପୂର୍ଣ୍ଣ ।୧୧୦।
ଲକ୍ଷ୍ମଣ ଦେଲେ ଜ୍ୟେଷ୍ଠନାମ । ସର୍ବାଙ୍ଗ ସୁଲକ୍ଷଣଧାମ ॥
କନିଷ୍ଠ ଶତ୍ରୁହନ୍ତା ଜାଣି । ତା ନାମ ଶତ୍ରୁଘ୍ନ ବଖାଣି ॥
କୌଶଲ୍ୟା ତନୁରେ ଲକ୍ଷ୍ମଣ । କୈକେୟୀ ତନୁରେ ଶତ୍ରୁଘ୍ନ ॥
ଜନ୍ମହୋଇଲେ ସେ ଯେପରି । ଶ୍ରୀରାମେ ଲକ୍ଷ୍ମଣ ଆଦରି ॥
ଭରତ ସଙ୍ଗେ ଶତ୍ରୁଘନ । ମିଳିଲେ ତନୁଅଂଶେ ପୁଣ ॥

ସଦ୍ୟେ ଏକତ୍ରେ ବିଚରଣ । ଆରମ୍ଭେ ବାଲ୍ୟ ଲୀଳାମାନ ।
ଶ୍ରୀରାମ ଲକ୍ଷ୍ମଣେ ମିଳିତ । ବାଳକ ଲୀଳାରେ ମୋହିତ ।
ମଧୁର ଭାବେ ଖେଳାକରନ୍ତେ । ପିତାମାତାଙ୍କ ମନହରେ ॥
ଅଶ୍ୱତ୍ଥ ପତ୍ରର ସମାନ । ଭୂଷଣ ଲଲାଟେ ଧାରଣ ॥
ମୁକ୍ତା ଜଡ଼ିତ ପନ୍ତ ପନ୍ତ । ପ୍ରାନ୍ତରେ ଝୁଂଗା ଝୁଣ୍ଟକନ୍ତ ।୧୨୦।
ଶୋଭା ଦିଶଇ ଚମତ୍କାର । ପ୍ରଭାବେ ଜଗତ ବିସ୍ତାର ॥
କଣ୍ଠରେ ମଣି ରତ୍ନହାର । ଅଙ୍କିତ ଶାର୍ଦ୍ଦୂଳ ନଖର ॥
କର୍ଣ୍ଣରେ ମକର କୁଣ୍ଡଳ । ମଣିରେ ଜଡ଼ିତ ସକଳ
ସମାନ ଶୋଭା ତାର ହୁଏ । ଅର୍ଜ୍ଜୁନ କନ୍ଥା ଫଳପ୍ରାୟେ ॥
ପଦରେ ଶୋଭିତ ନୂପୁର । ହସ୍ତରେ ସୁକ୍ତ ସୁମଧୁର ॥
ମେଖଳା କଟୀରେ ବିରାଜେ । କେୟୂରେ ବାହୁଦ୍ୱୟ ସାଜେ ॥
ଶ୍ରୀରାମ ରୂପ ଯେ ସୁନ୍ଦର । ବିସ୍ତାର ଶୋଭା ଅଲଙ୍କାର ॥
ଶ୍ରୀରାମ ମରକତ ବର୍ଣ୍ଣ । ହସିଲେ ଦିଶଇ ଦଶନ ॥
ଗୋବତ୍ସ ପୁଚ୍ଛକରେ ଧରି । ଦୁଆର ମଧ୍ୟେ ନୃତ୍ୟ କରି ॥
ସୁନ୍ଦର ବାଲ୍ୟଲୀଳା ଦେଖି । ହର୍ଷରେ ପିତାମାତା ସୁଖି ।୧୩୦
ଭୋଜନ ବେଳେ ଦଶରଥ । ସ୍ନେହେ ଡାକନ୍ତ ଆସ ନାଥ ॥
ଡାକନ୍ତ ବାରବାର ପୁଣ । ନ ଯାନ୍ତ କ୍ରୀଡ଼ା ଛାଡ଼ି ରାମ ॥
କୌଶଲ୍ୟା ଡାକ ଦଶରଥ । ରାମକୁ ଆଣ ଯା ଭରତ ॥
କୌଶଲ୍ୟା ପ୍ରଫୁଲ୍ଲ ଅନନ୍ଦ । ଗଲେ ପୁତ୍ରର ପଶ୍ଚାତ୍ପଦ ॥
ଯୋଗିମାନଙ୍କ ହୃଦଧନ । କେ ତାଙ୍କୁ କରିବ ଧାରଣ ॥
ହସିଣ ହସିଣ ଶ୍ରୀରାମ । ପିତାମାତାଙ୍କ ସନ୍ନିଧାନ ॥
ପ୍ରବେଶ ହୁଅନ୍ତ ସେ ଯାଇ । ସେଠାରେ କିଛି କ୍ଷଣ ରହି ।
ହାଦୁଅ ହାତେ ଉପସ୍ଥିତ । ଏକ ବା ଅର୍ଦ୍ଧଗ୍ରାସ ମାତ୍ର ॥
ସୁଖାଦ୍ୟ କରିଣ ଅହାର । ପଳାନ୍ତି ଅଗଣା ମଝିର ॥
ଖେଳନ୍ତ ବାଳକଙ୍କ ସଙ୍ଗେ । ସତ୍ୱର ପଳାନ୍ତ ସୁରଙ୍ଗେ ।୧୪୦।

କୌଶଲ୍ୟା ପୁତ୍ରଙ୍କ କୁଶଳ । ରାମେ ସଜାଇ କୁଣ୍ଡଳ ॥
ମୋଦକ ଚଣ୍ଡି ପୂର ଅନ୍ନ । ପିଷ୍ଟକ ବିବିଧ ପ୍ରକାର ॥
ସାଧବୀ ଗଣେ ଡାକିଆଣି । ଭୋଜନ କରାନ୍ତି ସେ ପୁଣି ॥
ଦେଖିଣ ପୁତ୍ରଙ୍କର ମନ । କୌଶଲ୍ୟା ଗୃହ କର୍ମମାନ ॥
ତ୍ୟକ୍ତ କରଣ ପାଟରାଣୀ । ସନ୍ତୋଷ ଭାବେ ରହି ପୁଣି ॥
ଦିନେକ ଶ୍ରୀରାମ ମାତାରେ । ବୋଇଲେ ଖାଦ୍ୟ ଅଣ ଖରେ ॥
କୌଶଲ୍ୟା କାର୍ଯ୍ୟେ ବ୍ୟସ୍ତ ଥାଇ । ସେକଥା ଶୁଣି ନ ପାରଇ ॥
ରା[illegible]ଣ ବାଡ଼ିଧରି ରାମ । ସିକାରେ କଲେ ଭାଣ୍ଡ ଭଗ୍ନ ॥
ସର ପଣ୍ଡାନ୍ତି ସିକା ତଳେ । ରାମ ଚଳଲେ ଧରି କରେ ॥
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ । ବାଣ୍ଟିଣ ଦେଲେ ତତକ୍ଷଣ ।୧୫୦।
କୌଶଲ୍ୟା ନିକଟକୁ ଯାଇଁ । ଏ କଥା ସୁପକାର କହି ॥
କୌଶଲ୍ୟା ହସି ହସି ଚାଲେ । ଚଳିଲେ ପୁତ୍ରଙ୍କ ପଶ୍ଚାତେ ॥
ପୁତ୍ରଙ୍କ ପଛରେ ଗମନ । ହୋଇଲେ ବ୍ରିପାଦ ସ୍ଖଳନ ॥
ପୁତ୍ରେ ଦେଖିଣ ଜନନୀରେ । ପଳାଇଗଲେ ସେ ସତ୍ୱରେ ॥
କୌଶଲ୍ୟା ବହୁ କ୍ଳେଶେ ପୁଣି । ଧଇଲେ ଶ୍ରୀରାମଙ୍କ ପାଣି ॥
ଦେଖିଲେ ବାଲ ଭାବ ଧରି । କାନ୍ଦେ ନୟନୁ ଝରେ ବାରି ॥
କୌଶଲ୍ୟା ଦେଖିଣ ଏସନ । ନ କହେ କିଛୁ କଥାମାନ ॥
ସ୍ନେହରେ ଆଲିଙ୍ଗନ କରି । ଏରୂପେ ପାଳନ୍ତି ଶ୍ରୀହରି ॥
ଶ୍ରୀରାମ ସତ୍ୟ ଯେ ପ୍ରଧାନ । ଜଗତ ଆନନ୍ଦ ବର୍ଦ୍ଧନ ॥
ବାଳକ ରୂପକୁ ଧାରଣ । ରଞ୍ଜନ ରାଜା ରାଣୀମନ ।୧୬୦।
କେତେକ କାଳ ଗତ ହେଲା । କୁମାର ଅବସ୍ଥା ଗଡ଼ିଲା ॥
ଗୁରୁ ବଶିଷ୍ଠେ ଡାକିଆଣି । ପୁତ୍ର ସମର୍ପେ ରାଜାରାଣୀ ॥
ଗୁରୁ କୃପାରେ ଅଳ୍ପକାଳେ । ପଣ୍ଡିତ ହୋଇଲେ ସକଳେ ॥
ଧନୁର୍ବେଦାଦି ଶାସ୍ତ୍ର ଯେତେ । ସହଜେ ଶିଖିଲେ ସମସ୍ତେ ॥
ତିନି ଭୁବନ ଅଧିପତି । ଲୀଳାଛଳରେ ନରମୂର୍ତ୍ତି ॥

ସେବକ ଭାବରେ ଲକ୍ଷ୍ମଣ । ଶ୍ରୀରାମ ପଶ୍ଚାତେ ଗମନ ॥
ଯେପରି ଭରତେ ଶତ୍ରୁଘ୍ନ । ଅଜ୍ଞାକୁ କରନ୍ତି ପାଳନ ॥
ଶ୍ରୀରାମ ଲକ୍ଷ୍ମଣଙ୍କ ସଙ୍ଗେ । ଅନନ୍ଦେ ଚଢ଼ିଣ ତୁରଙ୍ଗେ ॥
ଶର ଧରିଣ ମୃଗୟାର୍ଥେ । ମୃଗଙ୍କୁ ନିଧନ ବନସ୍ତେ ॥
ମୃଗଙ୍କୁ ମାରି ବନୁ ଅଣି । ତାହା ଦେଖନ୍ତି ପିତୃପାଶେ ॥
ଶ୍ରୀରାମଚନ୍ଦ୍ର ନମ୍ର ହୋଇ । ପ୍ରତ୍ୟହ ପ୍ରତ୍ୟୁଷ ଉଠଇ ॥
ସମସ୍ତ ସ୍ନାନ ବିଧି ସାରି । ପିତାଚରଣ ଶିରେ ଧରି ॥
ମାତାଙ୍କ ପଦେ ନମସ୍କରି । କରି ଚଳନ୍ତି ସ୍ଥାନାନ୍ତର ॥
କରନ୍ତି ଗୃହ କାର୍ଯ୍ୟମାନ । ଏକତ୍ର ହୋଇ ବନ୍ଧୁଗଣ ॥
ଅହାର ବିହାର ସମ୍ପୂର୍ଣ୍ଣ । ପରେ କରନ୍ତି ଜଳପାନ ॥
ମୁନିଙ୍କ ସଙ୍ଗେ ଧର୍ମଶାସ୍ତ୍ର । କରନ୍ତି ଅଲୋଚନା ନିତ୍ୟ ॥
ଶ୍ରୀରାମରୂପେ ପରଂବ୍ରହ୍ମ । କରନ୍ତି ମନୁଷ୍ୟର କର୍ମ ॥
ବିକାର ଶୂନ୍ୟ ଅନ୍ତ ନାହିଁ । ଜ୍ଞାନ ବିଗ୍ରହେ ବୋଧ ସେହି ॥
ସମସ୍ତେ ମନରେ ବିଦିତ । କାର୍ଯ୍ୟେ କର୍ତ୍ତୃତ୍ୱ ନାହିଁ ଯାର ॥
ଅମୃତ ସମ ରାମାୟଣ । ଶ୍ରୀରାମଚରଣ କରେ ଗାନ ।୧୮୦।

ଇତି ଶ୍ରୀବ୍ରହ୍ମାଣ୍ଡପୁରାଣେ ଉତ୍ତରଖଣ୍ଡେ ଶ୍ରୀମଦଧ୍ୟାତ୍ମରାମାୟଣେ
ଉମା ମହେଶ୍ୱର ସମ୍ବାଦେ ବାଳକାଣ୍ଡେ ତୃତୀୟୋଽଧ୍ୟାୟଃ ।

—○※○—

# ଚତୁର୍ଥ ଅଧ୍ୟାୟ ।

ଶ୍ରୀମହାଦେବ ଉବାଚ ।

ମହର୍ଷି ବିଶ୍ୱାମିତ୍ର ମୁନି । ଶ୍ରୀରାମଚନ୍ଦ୍ର ଜନ୍ମ ଜାଣି ॥
ଦର୍ଶନେ ଅଯୋଧ୍ୟା ପ୍ରବେଶ । ନୃପତି ପାଇଣ ସନ୍ଦେଶ ॥
ଚଳିଲେ ବଶିଷ୍ଠଙ୍କ ନେଇ । ପୂଜି କହିଲେ ଯୋଡ଼ିପାଣି ॥
କି କାର୍ଯ୍ୟେ ମୁନି ଅଗମନ । କୃତାର୍ଥ କଲ ମୋର ପ୍ରାଣ ॥
ଅଜି ଭୂମିର ପଦାର୍ପଣ । ସର୍ବ ସମ୍ପଦ ଅଗମନ ॥

ସ୍ୱ କାର୍ଯ୍ୟେ ଆସିଛୁ ଆପଣ । କହ ମୁଁ କରିବ ପାଳନ ॥
ସତ୍ୟ ଦେଖିଣ ବିଶ୍ୱାମିତ୍ର । ଉତ୍ତର ପ୍ରଦାନ ନୃପତ ॥
ପର୍ବ ଦିନଙ୍କ ମାନଙ୍କରେ । ଦେବ ପିତୃଙ୍କ ଉଦ୍ଦେଶ୍ୟରେ ॥
ଯଜ୍ଞ କରିବା ଅନୁଷ୍ଠାନ । ମାରନ୍ତି ଆସି ରାକ୍ଷସଗଣ ॥
ସୁବାହୁ ଅନୁଚର ଯେତେ । ସକଳେ ଯଜ୍ଞ ନାଶେ ପୁଣି ।୧୦।
ମୋ ସଙ୍ଗେ ଶ୍ରୀରାମଲକ୍ଷ୍ମଣ । କରିବେ ରାକ୍ଷସ ନିଧନ ॥
ନିଶଙ୍କ ହୋଇ ଅମ୍ଭ ସଙ୍ଗେ । ମଙ୍ଗଳ ହେବ ପଠା ବେଗେ ॥
ନେ[illegible]ଲେ ବଶିଷ୍ଠ ସଙ୍ଗରେ । ସୁପରାମର୍ଶ କର ବାରେ ॥
ଋଷିଙ୍କ ବାକ୍ୟ ଶୁଣି ନୃପ । ଚିନ୍ତା ସାଗରେ ସେ ନିକ୍ଷେପ ॥
ନିର୍ଜନେ ବଶିଷ୍ଠଙ୍କ ସଙ୍ଗେ । କଥା କହିବା କହ ବେଗେ ॥
ରାମ ହୋଇବ ସ୍ଥାନାନ୍ତର । ଛାଡ଼ିବା ଇଚ୍ଛା ନୋହେ ମୋର ॥
ଅତୀତ ବହୁ କାଳପର । ପାଇଛୁ ଏ ଶ୍ରେଷ୍ଠ କୁମର ॥
ତାହାଙ୍କ ମଧ୍ୟରେ ଶ୍ରୀରାମ । ଛାଡ଼ି ନ ପାରେ ମୋର ପ୍ରାଣ ॥
ମୁନିଙ୍କ ବାକ୍ୟ ହେଳାକଲେ । ଅମ୍ଭର ରକ୍ଷା ନାହିଁ ଭଲେ ॥
ନିଶ୍ଚୟ କ୍ରୋଧ ଋଷି କରି । ଶାପ ବହିବେ ମୋ ଉପରି ।୨୦।
ହେ ଗୁରୁଦେବ କୃପାକର । ଏକ୍ଷଣେ ଶ୍ରେୟକୁ ବିଚାର ॥
ଯେପରି ବାକ୍ୟ ଋଷିଙ୍କର । ଖଣ୍ଡନ ନୋହିବ ସତ୍ୱର ॥
ଅଧର୍ମ ନୋହିବ ଅମ୍ଭର । ଏ କଥା ସୁମନେ ବିଚାର ॥
ବଶିଷ୍ଠ କହିଲେ ରାଜନ । କହୁଛି ତତ୍ତ୍ୱ କଥାମାନ ॥

ବଶିଷ୍ଠଉବାଚ ।

ଏ ତତ୍ତ୍ୱ କଥା ଗୋପନୀୟ । ସୁମନେ ଶୁଣ ଏ ସମୟ ॥
ବ୍ୟବହାରରେ ଯାହା ଭାବ । ଶ୍ରୀରାମ ନୁହନ୍ତି ମାନବ ॥
ପୂର୍ବକାଳରେ ଦେବ ଶ୍ୱର । ବ୍ରହ୍ମପ୍ରାର୍ଥନେ ବିଶମ୍ଭର ॥
ପରମବ୍ରହ୍ମ ସନାତନ । କୌଶଲ୍ୟା ଗର୍ଭରେ ଜନମ ॥
ପୂର୍ବଜନ୍ମରେ ମନୁ ବଂଶେ । କଶ୍ୟପ ନାମ ଅବଶେଷେ

କୌଶଲ୍ୟା ପତ୍ନୀ ତୁମ୍ଭେ ପତି । ଶୁଣିଲେ ବିସ୍ମୟ ଭାରତୀ ।୭୦।
ସାମାନ୍ୟ ଭୋଗ ପରିହରି । ତପସ୍ୟା ଉଭୟେ ଆଚରି ॥
ବିଷ୍ଣୁଙ୍କୁ ପୂଜା ଏକମାତ୍ର । ଧ୍ୟାନ କରିଲ ଅବିରତ ॥
କଠୋର ତପେ ଦରଶନ । ପ୍ରସନ୍ନ ହୋଇ ନାରାୟଣ ॥
ବର ପ୍ରାର୍ଥନା କର କହି । ଯେ ବରେ ସନ୍ତୋଷ ତୋ ହୋଇ ॥
ବିଷ୍ଣୁ ସଦୃଶ ପୁତ୍ରବର । ସବେଗେ ଠାକୁରେ ମାଗିଲ ॥
ତଥାସ୍ତୁ କହି ଅନ୍ତର୍ଦ୍ଧାନ । ହୋଇଲେ ପ୍ରଭୁ ଭଗବାନ୍ ॥
ଭୂତକଥାକୁ ଦେଖ ହରି । ଶ୍ରୀରାମ ରୂପେ ଅବତରି ॥
ଲକ୍ଷ୍ମଣ ନାଗେ ଶେଷଦେବ । ରାମାଜ୍ଞା ପାଳନ କରିବ ॥
ଗଦାଦି ଶଙ୍ଖ ସୁଦର୍ଶନ । ଜନ୍ମିଲେ ଭରତ ଶତ୍ରୁଘ୍ନ ॥
ଜାନକୀଦେବୀ ଯୋଗମାୟା । ଜନକ ପାଳି ତା ଯେନେହା ॥
ଜାନକୀ ସଙ୍ଗେ ମିଳାଇବେ । ଆସିଲେ ବିଶ୍ୱାମିତ୍ର ଏବେ ।୮୧।
କରଣ କୌଶିକେ ଅର୍ଚ୍ଚନ । ପଠାଅ ଶ୍ରୀରାମ ଲକ୍ଷ୍ମଣ ॥
ଏ ଗୋପନୀୟ କଥାମାନ । ନ କର ପ୍ରକାଶ ଏକ୍ଷଣ ॥
ଶୁଣିଲେ ବଶିଷ୍ଠ ବଚନ । ରାଜା ଆନନ୍ଦ ହେଲେ ମନ ॥
ରାମ ଲକ୍ଷ୍ମଣ ଡାକି ଆଣି । କୋଳେ ବସାଇ ନୃପମଣି ॥
ମସ୍ତକ ଆଘ୍ରାଣ କରିଲେ । କୌଶିକ ହସ୍ତେ ସମର୍ପିଲେ ॥
ତେଜସ୍ୱୀଋଷି ବିଶ୍ୱାମିତ୍ର । କଲ୍ୟାଣ କଲେ ଦଶରଥ ॥
ଶ୍ରୀରାମ ଲକ୍ଷ୍ମଣଙ୍କୁ ସଙ୍ଗେ । ସଶସ୍ତ୍ରେ ନେଇଗଲେ ବେଗେ ॥
କୌଶିକ ଏକ ବିଦ୍ୟାଦେଲେ । ତହିଁ ରେ କ୍ଷୁଧା ନୋହେ ଭଲେ ॥
ସେ ବିଦ୍ୟା ବଳେ ବଳବାନ । ନୋହିବ କହି ବ୍ରହ୍ମଜ୍ଞାନୀ ।୯୦।
ବିଶ୍ୱାମିତ୍ରଙ୍କ ସଙ୍ଗେ ଗଲେ । ତାଡ଼କା ବନରେ ମିଳିଲେ ॥
ରାମଙ୍କୁ ବିଶ୍ୱାମିତ୍ର କହି । ତା ସଙ୍ଗେ ନ୍ୟାୟ୍ୟ ଯୁଦ୍ଧ ନାହିଁ ॥
ତ୍ରିଲୋକ ଲୋକେ ଉତ୍ପୀଡ଼ନ । ନାମ ତାଡ଼କା ତାର ବନ ॥
ନ କର ମନେ ନାରୀଜ୍ଞାନ । ସଂହାର କରିବ ବହନ ॥

ଧନୁରେ ଗୁଣ ଦେଲେ ରାମ । ଋଷିଙ୍କ ଆଜ୍ଞାକୁ ପାଳନ ॥
ଧନୁ ଟଙ୍କାର ଶବ୍ଦମାନ । ଶବ୍ଦେ ପୂରିଲା ଘୋରବନ ॥
ବିକଟ ଆକାର ତାଡ଼କା । ଧାଇଁଣ ଦେଖା ଦେଲା ଏକା ॥
ସହି ନ ପାରି ଧନୁ ସ୍ୱନ । କ୍ରୋଧେ ଉଠିଲା ତତକ୍ଷଣ ॥
ରାକ୍ଷସୀ ମହା କ୍ରୋଧଭରେ । ମିଳିଲା ଶ୍ରୀରାମ ସମ୍ମୁରେ ॥
ଧାଇଁଲା ଯୁଦ୍ଧର କୌତୁକେ । ପଡ଼ିଲା ଶ୍ରୀରାମ ସମ୍ମୁଖେ ।୭୦।
ଶ୍ରୀରାମ ଦେଖିଲେ ତତ୍ପର । ତା ହୃଦେ ପ୍ରହାରିଲେ ଶର ॥
ପଡ଼ିଲା ରାକ୍ଷସୀ ଭୂମିରେ । ମୁଖରୁ ରୁଧିର ବାହାରେ ॥
ସୁନ୍ଦର ଯକ୍ଷୀ ରୂପ ଧରି । ଭୂଷଣ ଅଳଙ୍କାରେ ପୂରି ॥
ସେ ଯକ୍ଷୀ ଶାପେ ନିଶାଚରୀ । ରାମ କୃପାରେ ହେଲା ପାରି ॥
ପ୍ରଣାମ କରି ପ୍ରଦକ୍ଷିଣ । ରାମାଙ୍କେ ସ୍ୱର୍ଗକୁ ଗମନ ॥
କୌଶିକ ରାମେ ଆଲିଙ୍ଗନ । ମସ୍ତକ କରିଲେ ଆଘ୍ରାଣ ॥
ପ୍ରୀତରେ ଗୁପ୍ତ ମନ୍ତ୍ର ଦେଲେ । ନାନାବିଧ ଅସ୍ତ୍ର ସମର୍ପିଲେ ॥
ରାମ ଚରଣେ କରି ଆଶ । ଶ୍ୟାମଚରଣ ଦାସ ଭାଷ ॥

ଇତି ଶ୍ରୀବ୍ରହ୍ମାଣ୍ଡପୁରାଣେ ଉତ୍ତର ଖଣ୍ଡେ ଶ୍ରୀମଦଧ୍ୟାତ୍ମରାମାୟଣେ ଉମା-ମହେଶ୍ୱର ସମ୍ବାଦେ ବାଳକାଣ୍ଡେ ନାମ ଚତୁର୍ଥୋଽଧ୍ୟାୟଃ ।



## ପଞ୍ଚମ ଅଧ୍ୟାୟ ।

ଶ୍ରୀ ମହାଦେବ ଉବାଚ ।

ସୁନ୍ଦର କାମାଶ୍ରମ ବନ + ସେ ବନ ମୁନିଜନେ ପୂର୍ଣ୍ଣ ॥
ସେଠାରେ ରଜନୀ ବଞ୍ଚିଲେ । ଦ୍ୱିଜ ଗୃହଣ ସେବା କଲେ ॥
ତତ୍ପରେ ଋଷିଙ୍କ ଆଶ୍ରମ । ପ୍ରବେଶ ହେଲେ ତିନି ଜଣ ॥
ଆଶ୍ରମସ୍ଥିତ ମୁନିଗଣ । ଦ୍ରୁତବେଗରେ ଆଗମନ ॥
ସମ୍ମୁଖେ ଆସିଣ ପ୍ରବେଶ । କୌଶିକ ଦେଲେ ଉପଦେଶ ॥
ନାନା ବିଧିରେ ଉପଚାରେ । ଶ୍ରୀରାମ ଲକ୍ଷ୍ମଣ ପୂଜିଲେ ॥

ରାମ କହିଲେ ମୁନିବର । ଯଜ୍ଞ ଆରମ୍ଭ ତୁମ୍ଭେ କର ॥
ରାକ୍ଷସଗଣ କେଉଁଠାରେ । ବାସ କରନ୍ତି କହ ମୋରେ ॥
କୌଶିକ ମୁନିଗଣ ସଙ୍ଗେ । ଯଜ୍ଞ ଆରମ୍ଭ କଲେ ବେଗେ ॥
ମଧ୍ୟାହ୍ନ ସମୟରେ ପୁଣି । ନଭେ ଦେଖିଲେ ରଘୁମଣି ।୧୦।
ଦୁଇ ରାକ୍ଷସ ରହି ଶୂନ୍ୟ । ମାରୀଚ ସୁବାହୁ ଯେ ପୁଣ ॥
ରୁଧିର ଅସ୍ଥି ଅବଶ୍ରାନ୍ତ । ଆରମ୍ଭ କଲେ ବରଷଣ ॥
ଅଭୟ ଚତୁର ରଘୁବର । ହସ୍ତକୁ ନେଲେ ଧନୁଃଶର ॥
ଯୋଜନ କଲେ ଦୁଇ ବାଣ । ଆକର୍ଣ୍ଣ କଲେ ଶରାସନ ॥
ପରେ କରିଲେ ଆକର୍ଷଣ । ପ୍ରତ୍ୟେକେ କଲେ ନିକ୍ଷେପଣ ॥
ତନ୍ମଧ୍ୟେ ଏକ ଗୋଟି ବାଣ । ମାରୀଚେ କଲା ଘୂର୍ଣ୍ଣିମାନ ॥
ଶରଆଘାତେ ସେ ଦଇତ । ଶତ ଯୋଜନେ ଉପଗତ ॥
ପଡ଼ିଲା ସମୁଦ୍ର ତଟରେ । ରହିଲା ବିଶେଷ ଭୟରେ ॥
ମହାଗ୍ନି ସମ ଅନ୍ୟ ବାଣ । ବଧିଲା ସୁବାହୁର ପ୍ରାଣ ॥
ବାଣ ଆଘାତେ ପ୍ରାଣ ଗଲା । ସେ ସ୍ଥାନେ ସୁବାହୁ ପଡ଼ିଲା ।୨୦।
ତପୃରେ ସୁମିତ୍ରା ନନ୍ଦନ । ରାକ୍ଷସ ଅନୁଚରମାନ ॥
ସମସ୍ତ କରି ନିରୋଧନ । ପେଷିଲେ ଶମନ ଭୁବନ ॥
ଆକାଶେ ମିଳି ଦେବଗଣ । କରିଲେ ପୁଷ୍ପ ବରଷଣ ॥
ରାମ ଲକ୍ଷ୍ମଣ ଆହ୍ଲାଦିଲେ । ମନରେ ଆନନ୍ଦ ହୋଇଲେ ॥
ସିଦ୍ଧ ଚାରଣ ମୁନିଗଣେ । ପ୍ରଶଂସା କଲେ ଜଣେ ଜଣେ ॥
ଭକ୍ତିରେ କୌଶିକନନ୍ଦନ । ବାଷ୍ପ ଆକୁଳିତ ନୟନ ॥
ହର୍ଷରେ ପୁଲକିତ ମନ । ଶ୍ରୀରାମେ କରି ଆଲିଙ୍ଗନ ॥
କୋଳେ ବସାଇ ତତକ୍ଷଣ । ସ୍ନେହରେ ମସ୍ତକ ଆଘ୍ରାଣ ॥
ଉଦ୍ଦିଷ୍ଟ ଭୋଜନ କାରଣ । ଫଳ ଆଣିଲେ ମୁନିଗଣ ॥
ସୁସ୍ୱାଦୁ ପକ୍ୱ ଫଳମାନ । କେ ତାହା କରିବ ବର୍ଣ୍ଣନ ।୩୦।
ଭୋଜନ ସୁମଧୁର ଫଳ । ହର୍ଷରେ ଅତି କୁତୂହଳ ॥

ଋଷିଙ୍କ ସଙ୍ଗେ ସର୍ବ କ୍ଷଣ । ସେଠାରେ ରହି ତିନିଦିନ ॥
ଚତୁର୍ଥ ଦିନେ ଆଗମନ । କୌଶିକ ରାମେ ସମ୍ବୋଧନ ॥
ଚାଲ ହେ ବିଦେହ ନଗରେ । ଜନକ ଯଜ୍ଞ ଦେଖିବାରେ ॥
ଗମନ କଲେ ସେ ସ୍ଥାନକୁ । ସଞ୍ଚାର କରିବେ ଭୂମିକୁ ॥
ଯେ ଧନୁ ପିନାକପାଣିର । ଦେଖିବ ଅଛି ତାଙ୍କ ଘର ॥
ସଙ୍ଗରେ ଶ୍ରୀରାମ ଲକ୍ଷ୍ମଣ । ନେଇ ଚଳିଲେ ମୁନିଗଣ ॥
ଗଙ୍ଗାକୂଳରେ ପ୍ରବେଶିଲେ । ଗୌତମ ଆଶ୍ରମ ଦେଖିଲେ ॥
ସେଠାର ଅହଲ୍ୟା ସୁନ୍ଦରୀ । ତପସ୍ୟା କରେ ଅନାହାରୀ ॥
ଶ୍ରୀରାମ କମଳଲୋଚନ । କୌଶିକେ ପଚାରିଲେ ପୁଣ ।୪୦।
ବୃକ୍ଷରେ ଫଳ ସୁଶୋଭନ । ପୁଷ୍ପରେ ବେଷ୍ଟିତ ଆଶ୍ରମ ॥
ଏ ମୃଗ ପକ୍ଷୀ ପ୍ରାଣୀ ଶୂନ୍ୟ । କହ ହେ ମୁନି କି କାରଣ ॥
ସମ୍ମୁଖେ ଯେ ଆଶ୍ରମବର । କହିବ କେଉଁ ମହାତ୍ମାର ॥
ଫଳ ପୁଷ୍ପରେ ସୁଶୋଭିତ । କାହିଁ ନାହାନ୍ତି ପ୍ରାଣୀ ମାତ୍ର ॥
ମୋ ମନ ହେଉଛି ଚଞ୍ଚଳ । ଶୁଣିବା ପାଇଁ ଯାଉକାର ॥
ସ୍ୱରୂପ ବର୍ଣ୍ଣନା କରିଣ । ଶୀତଳ କର ଆମ୍ଭ ମନ ॥

ବିଶ୍ୱାମିତ୍ର ଉବାଚ ।

କୌଶିକ କହିଲେ ବର୍ଣ୍ଣନ । ଏହାର ଆଶ୍ଚର୍ଯ୍ୟ ଘଟନ ॥
ପୂର୍ବରେ ଧାର୍ମିକ ପରମ । ବିଖ୍ୟାତ ତପସ୍ୱୀ ଗୌତମ ॥
କଠୋର ତପସ୍ୟା କରନ୍ତି । ହରିଙ୍କି ଆରାଧନା ଚିନ୍ତି ॥
ଋଷିଙ୍କ ତପ ହେଲା ସିଦ୍ଧି । ସନ୍ତୁଷ୍ଟ ହୋଇଲେ ସେ ବିଧି ।୫୦।
ଅହଲ୍ୟା ନାମରେ କାମିନୀ । ସର୍ବ ଲୋକଙ୍କ ବିମୋହିନୀ ॥
କରିଲେ ତାଙ୍କୁ ସମ୍ପ୍ରଦାନ । ଆନନ୍ଦ ହୋଇଲେ ଗୌତମ ॥
ସର୍ବଦା ଋଷିଙ୍କ ପାଖରେ । ସେବା କରନ୍ତି ନାନାମତେ ॥
ଏମନ୍ତେ କେତେ ଦିନ ଗଲା । ତା ରୂପ ବାସବ ଦେଖିଲା ॥
କାମରେ ହୋଇଲା ପୀଡ଼ିତ । କିମତେ ହୋଇବ କେମନ୍ତ ॥

ସେ ପ୍ରଛନ୍ନ ଅନ୍ୱେଷଣ । ସୁଯୋଗ ପାଇବାକୁ ପୁଣ ॥
ଦିନେକ ମୁନି ତପୋଧନ । କରିଲେ ସ୍ନାନାନ୍ତେ ଗମନ ॥
ଗୌତମ ରୂପ ଇନ୍ଦ୍ର ଧରି । ଅହଲ୍ୟା ସଙ୍ଗେ ପ୍ରୀତିକରି ॥
କୁଟୀରୁ ବାହାରି ହୁଅନ୍ତେ । ପଡ଼ିଲେ ଗୌତମ ସାକ୍ଷାତେ ॥
ଇନ୍ଦ୍ରଙ୍କୁ ନିଜରୂପ ଦେଖି । ପଚାରି ମନେ ହୋଇ ଦୁଃଖି ।୬୦।
ତୁ କିଏ ଆମ୍ଭ ରୂପ ଧରି । କୁକାର୍ଯ୍ୟ କରିଲୁ ଏପରି ॥
ନ'ଦେଲେ ସତ୍ୟ ପରିଚୟ । ଭସ୍ମ କରିବି ତୋର ଦେହ ॥
କହେ ଦେବଙ୍କ ଅଧିପତି । ରଖନ୍ତୁ ଅଧମେ ସମ୍ପ୍ରତି ॥
କାମବାଣରେ ବଶୀଭୂତ । ଜଘନ୍ୟ କାର୍ଯ୍ୟେ ହେଲି ରତ ॥
କ୍ଷମ ମଦନ ଶରରେ । ଚିତ୍ତବିହ୍ୱଳ ନିରନ୍ତରେ ॥
ଇନ୍ଦ୍ରର ଏ ବାକ୍ୟ ଶ୍ରବଣ । ମୁନି ଲୋଚନ ତାମ୍ର ବର୍ଣ୍ଣ ॥
ଇନ୍ଦ୍ରଙ୍କୁ ଶାପ ଦେଲେ ମୁନି । ଲମ୍ପଟ-ଭାବ ତାର ଜାଣି ॥
ଯେ କାର୍ଯ୍ୟ ଦୁରାତ୍ମା କରିଲୁ । ସହସ୍ର ଯୋନି ହେଉ ତୋର ॥
ଶାପ ଦେଇଣ ଋଷିବର । ପ୍ରବେଶ ହେଲେ ନିଜପୁର ॥
ଦେଖିଲେ ଅହଲ୍ୟା ସୁନ୍ଦରୀ । ନୟନୁ ଝରେ ଅଶ୍ରୁବାରି ।୭୦।
ମସ୍ତକେ ଦୁଇ ହସ୍ତ ଦେଇ । ମୁନିଙ୍କ ଦେଖି କମ୍ପେ ଦେହୀ ॥
ଋଷିଙ୍କ ଆରକ୍ତ ଲୋଚନ । କହିଲେ ଦାରୁଣ ବଚନ ॥
ରେ ଦୁଷ୍ଟା ମୋର ନିକେତନ । ନ ପଶେ ରସେ କେଉଁଜନ ॥
ଏ ସ୍ଥାନେ ତୁ ହେବୁ ପାଷାଣ । ରହିବୁ ଯାଏ କାଳ ଜାଣ ॥
ଅନାହାରରେ ରହିଥିବୁ । ତପସ୍ୟା ଆଶ୍ରୟ କରିବୁ ॥
ଆତପ ଜଳ ସବୁ କ୍ଷଣ । ସହି ରହିବୁ ତୁ ପବନ ॥
ଶ୍ରୀରାମଚନ୍ଦ୍ର ଭାବି ମନେ । ସାଧନା କରିବୁ ଯତନେ ॥
ବହୁ ସହସ୍ର ଅବ୍ଦ ପରେ । ଶ୍ରୀରାମ ଲକ୍ଷ୍ମଣ ସଙ୍ଗରେ ॥
ପ୍ରବେଶି ଏହି ଆଶ୍ରମରେ । ପାଦ ଅର୍ପଣେ ତୋ ଶରୀରେ ॥
ପାଇବୁ ନିଜ କଳେବର । ଖଣ୍ଡନ ନୋହିବ ଏ ଗୀର ।୮୦।

ପୂଜା କରବୁ ଭକ୍ତିଭରେ । ସ୍ତୁତ କରବୁ ବାରେ ବାରେ ॥
ଶେଷରେ ପ୍ରଦକ୍ଷିଣ କର । ପାପ ଗୁଣିବୁ ହେବୁ ପାର ॥
ସେ କାଳେ ସ୍ୱରୂପ ଧାରଣ । ହୋଇବ ମନକାଙ୍କ୍ଷା ପୂର୍ଣ୍ଣ ॥
ତେବେ ଅମୃର ସେବା କର । ରହିବୁ ସୁଖରେ ସୁନ୍ଦର ॥
ଏ କଥା କହିଲେ ଗୌତମ । ଚଳିଲେ ହିମାଳୟାଶ୍ରମ ॥
ସେହି କାଳରୁ ଏ ଅଶ୍ରମ । ଗୋପନ ସଙ୍ଗ ଜୀବଗଣ ॥
ପବନାଶନ ସଙ୍କଷଣ । ତା ବାଞ୍ଛା ତୁମ୍ଭର ଚରଣ ॥
ଅହ[illegible] ସଦା ଭାବ ମନ । ତପସ୍ୟା ତାର ହେଲା ପୂର୍ଣ୍ଣ ॥
ଆପଣ ବରଷ୍ଟ ଦ୍ୱାରେ । ପବିତ୍ର କର ଏହିଠାରେ ॥
ତୁମ୍ଭର ପଦରଜ ଦେଇ । କର ତାହାଙ୍କୁ ଶାପୁ ଛାଡ଼ି ॥
କୌଶିକ ଧର ରାମକର । ପାଷାଣ ଦେଖାଇ ସତ୍ୱର ॥
ଶିଳାରେ ପଦ ଦ୍ୟନ୍ତେ ରାମ । ଧାରଣ ପୂର୍ବ ରୂପ ସମ ॥
ସୁଯୋଗ ସମୟ ବୁଝିଲା । ସମ୍ମୁଖେ ଶ୍ରୀରାମ ଦେଖିଲା ॥
ପଡ଼ିଲା ରାମ ଚରଣରେ । ମୁଁ ରାମ ପରିଚୟ ଦେବଲ ॥
ଅହଲ୍ୟା ରାମେ ଦରଶନ । ଧାରଣ ବସ୍ତ୍ର ପୀତବର୍ଣ୍ଣ ॥
ଚତୁର୍ଭୁଜରେ ଶୋଭା ସଦା । ନନନ ଶଙ୍ଖ ଚକ୍ର ଗଦା ॥
ଅବର ଶୃଙ୍ଗ କର ଆଭା । ସୁନ୍ଦର ଉମଲାର ପ୍ରଭା ॥
ପରକ୍ଷଣରେ ଦେଖି ପୁଣ । ଶ୍ରୀରାମ ରୂପେ ଧନୁର୍ବାଣ ॥
ଈଷତ ସହାସ୍ୟ ବଦନ । ସଙ୍ଗରେ ଅନନ୍ତ ଲକ୍ଷ୍ମଣ ॥
କମଳ ନୟନ ଯୁଗଳ । ଶ୍ରୀବତ୍ସ ଚିହ୍ନ ବକ୍ଷସ୍ଥଳ ॥
ନୀଳମଣିର ସମ କାନ୍ତି । ତେଜରେ ରୂପ ଝଟକନ୍ତି ॥
ଶ୍ରୀରାମ ରୂପେ ନାରାୟଣ । ଅହଲ୍ୟା କଲା ଦରଶନ ॥
ନୟନୁ ଝରେ ଅଶ୍ରୁ ବାରି । ପ୍ରେମରେ ଆନନ୍ଦ ସ୍ପନ୍ଦନ ॥
ଗୌତମ ବାକ୍ୟ ସ୍ମରଣ । ବୁଝିଲେ ସମସ୍ତ କାରଣ ॥
ପରମ ପୁରୁଷ ଶ୍ରୀରାମ । ଯେ ବ୍ରହ୍ମ ପତିତପାବନ ॥

ଲଜ୍ଜ ତୁଳସୀ ଚନ୍ଦନରେ । ନାନାବିଧ ଭୋଗ ପୂଜା କରେ ॥
ରାମ ଚରଣେ ନମସ୍କାର । ଉଠି କରଇ ବାରବାର ॥
ଶରୀର ଭାବ ରୋମାଞ୍ଚିତ । ଦ୍ରୁତ ବର୍ଷିବାରୁ ନେତ୍ର ॥
ଗଦ୍ଗଦ ବାକ୍ୟ ଶ୍ରୀରାମର । ସ୍ତୁତି ଆରମ୍ଭ ପୁନର୍ବାର ॥

ଅହଲ୍ୟୋବାଚ ।

ଅହଲ୍ୟା ସମ୍ବୋଧନ କରି । ଜଗତ ଆଧାର ଶ୍ରୀହରି ।୧୦୦।
ଚରଣରେଣୁ ପରଶନ । କୃତାର୍ଥ ହୋଇଲି ମୁଁ ପୁଣ ॥
ବ୍ରହ୍ମା ମହେଶ ଦେବଗଣ । କରନ୍ତି ଯାହା ଅନ୍ବେଷଣ ॥
ଅଦ୍ୟ ସେ ଚରଣ ରଜରେ । ସ୍ପର୍ଶ କଲେ ମୋ ଶରୀରେ ॥
ତୁମ୍ଭ ଭଜିବା କାର୍ଯ୍ୟମାନ । ରାମ ନାମ କୋଟିକ ବିଧାନ ॥
ତୁମ୍ଭର ପଦ ସର୍ବମୟ । ଆନନ୍ଦମୟ ସେ ସମସ୍ତ ॥
ପ୍ରତ୍ୟକ୍ଷ କରି ଜଗମାୟା । ମାନବ ରୂପେ ମୁକ୍ତ ତାହା ॥
ଯାହା ଅଙ୍ଗୁଷ୍ଠ ଚରଣରେ । ସୁରଧୁନୀ ସେ ଦ୍ରବାକରେ ॥
ଦେବତା ବିରଞ୍ଚି ସହିତ । ସମସ୍ତ ସ୍ତୁଅନ୍ତି ପବିତ୍ର ॥
ଯତନେ ସେବନ୍ତି ନାରାୟଣ । ସେ ପଦ କଲି ଦରଶନ ॥
ମୋହର ଭାଗ୍ୟ ଯେତେ ଦେବ । ସଂସାରେ କେ ତାହା ବର୍ଣ୍ଣିବ ।୧୧୦
ମାନବ ରୂପେ ହୋଇ ଜନ୍ମ । ସୁନ୍ଦର ବିଶାଳ ଲୋଚନ ॥
କରେ ଧରିଣ ଶରାସନ । ଶ୍ରୀରାମ ସ୍ବୟଂ ସନାତନ ॥
ମୁହିଁ ଅଧମ ଜନଜନ । ଭଜନ କରେ ଶରଣ ॥
ସେ ପାଦ କରି ଅନ୍ବେଷଣ । ବିରଞ୍ଚି ଆଦି ଦେବଗଣ ॥
ନ ଉପଜୁରୁ ବ୍ରହ୍ମ ଜାତ । ଜଗତେ ସମସ୍ତ ବିଦିତ ॥
ଚନ୍ଦ୍ରମାଙ୍କୁ ନିର୍ଲୋଚନ । ଯୋଗେ ଜପନ୍ତି ଅନୁକ୍ଷଣ ॥
ସ୍ୱର୍ଗ ଲୋକରେ ଦେବଗଣ । ଚରିତ କରନ୍ତି ବଖାଣ ॥
ବ୍ରହ୍ମା ସହିତେ ମହେଶର । ନାରଦ ଆଦି ମୁନିବର ॥
ବୀଣା ଧରି କରେ ଗାନ । ହୃଦ ପୁଲକେ ଭାବି ମନ ॥

ମୁଁ ନାରୀ ହୋଇ ମୂଢ଼ମତି । ବର୍ଣ୍ଣିବି କାହୁଁ ମୋ ଶକତି ।୧୩୦।
ବାଣୀ ଭଜନ୍ତି ଅନବ୍ରତ । ବାର ପୁରୁଷ ବେଦନେତ ॥
ଚରଣେ ଅବ୍ୟ ମୁଁ ଶରଣ । ରଖନ୍ତୁ ପରମ କାରଣ ॥
ମାୟା ମୋହିତ ଯେ ସ୍ୱଭାବ । ଭିନ୍ନଅଛନ୍ତି ସ୍ଥାନ ସବ ॥
ଯେ ଜନ ନିଧନ ଅନାଦି । ଯାହାର ନାହିଁ ବିନାଶାଦି ॥
ଯାହାରେ ମାୟା ଦେହ ବନ୍ଧି । ପ୍ରକାଶ ନରରୂପ ସେହି ॥
ସାମାନ୍ୟ ନାରୀ ରୂପ ମୋର । କୃପାରେ କରନ୍ତି ଉଦ୍ଧାର ॥
ତୁ[illegible]ରାମ ବ୍ରହ୍ମ ସର୍ବମୟ । ସର୍ଜନ ପାଳନ ପ୍ରଳୟ ॥
ସମସ୍ତ ତୁମ୍ଭଠାରୁ ଜାତ । ତୁମ୍ଭଙ୍କୁ ନୁହେ ଏ ଅଦ୍ଭୁତ ॥
ବିରଞ୍ଚି ବିଷ୍ଣୁ ମହେଶ୍ୱର । ତ୍ରିରୂପ ତୁମ୍ଭେ ମାୟାଧର ॥
ଏକ ପଦାର୍ଥ ତିନରୂପ । ପୁଣି ହୁଅନ୍ତି ଏକରୂପ ।୧୪୦।
ଏହା ଯେ ବୁଝିପାରେ ଭଲେ । ସଂସାର ବାରିଧି ସେ ତରେ ॥
ଶ୍ରୀରାମଚନ୍ଦ୍ର ଗୁଣମଣି । ପ୍ରିୟା ଭାବରେ କମଳିଣୀ ॥
ପାଦପଦ୍ମକୁ ଧରି କରେ । ନେଇ ରଖଇ ହୃଦୟରେ ॥
ପୂର୍ବରେ ଏକଇ ଚରଣ । ବ୍ୟାପିଣ ଗଲା ତ୍ରିଭୁବନ ॥
ବଳିଙ୍କ ରକ୍ଷା କଲ ଦ୍ୱାରେ । ନେଇ ରଖିଲ ପାତାଳରେ ॥
ଯାହାରେ ଅହଂକାରିମାନ । ଛାଡ଼ି ସକଳ ମୁନିଗଣ ॥
ତୁମ୍ଭ ଚରଣ ଦୃଢ଼ତରେ । ଚିନ୍ତନ୍ତି ମନ ସନ୍ତୋଷରେ ॥
ତୁମ୍ଭର ଚରଣେ ମୋ ମନ । ଏ ଭବ ଦୁରିତ ଖଣ୍ଡନ ॥
ହେ ମହାପ୍ରଭୁ ଗୁଣାଧାର । ତୁମ୍ଭ ପାଦରେ ନମସ୍କାର ॥
ନ ଭାବେ ମୁହିଁ ଅନ୍ୟଜନ । ଜଗତେ ନାହିଁ ତୋ ସମାନ ॥
ଅପାରଅଦ୍ୱ ସନାତନ । ପରମବ୍ରହ୍ମ ତୁମ୍ଭେ ପୁଣ ॥
ସକଳ ଭୂତରେ ରମଣ । ନିର୍ଲିପ୍ତ ଭାବରେ ଆପଣ ॥
ବାକ୍ୟଅତୀତ ତୁମ୍ଭଠାରେ । ନିର୍ଣ୍ଣୟ ଅଛି ପ୍ରଣବରେ ॥
ଗାଈ ବେଦରେ ଜଗନ୍ମୟ । କାର୍ଯ୍ୟ କରନ୍ତି ସମୁଦାୟ ॥

ତୁମ୍ଭେ ନିର୍ମାୟା ମହାପ୍ରଭୁ । ପ୍ରମାଣମଯ୍ୟ ଜନସବୁ ॥
ମାୟାରେ ନାନା ରୂପଧର । ଖେଳୁ ତୁ ଜଗତେ ବହଳ ॥
ଜୀବ ମାୟାରେ ତମୋହତ । ବୁଝି ନପାରେ ତୁମ୍ଭ ତତ୍ତ୍ୱ ॥
ସମସ୍ତ ଜୀବ ହୃଦୟରେ । ରହୁ ତୁ ଅନ୍ତର ବାହାରେ ॥
ହେ ପ୍ରଭୁ ତୁମ୍ଭେ ନିରଞ୍ଜନ । କ୍ରିୟା ରହିତ ସନାତନ ॥
ପବିତ୍ର ସ୍ୱରୂପ ବିଜ୍ଞାନ । ହେ ଦେବ ତୁମ୍ଭେ ନାରାୟଣ ॥
ମୁଁ ନାରଜାତି ତମୋଗୁଣୀ । ଅଳ୍ପ ବୁଦ୍ଧିରେ ବଷ୍ଟେ ହୀନ ॥
ତୁମ୍ଭର ତତ୍ତ୍ୱକୁ କିପରି । ଜାଣିପାରିବ ଦଇତାରି ॥
ତୁମ୍ଭ ଚରଣେ ନମସ୍କାର । କରୁଛି ଶତ ଶତ ବାର ॥
ଭକ୍ତିରେ ଅଭୟ ଚରଣ । ମୋ ମନ ରହୁ ଅନୁକ୍ଷଣ ॥
ଜୀବେ ପ୍ରମାଣ ଦୟାବାନ । ଇନ୍ଦ୍ରିୟ ନିୟନ୍ତା ଆପଣ ॥
ହେ ସାରସାର ନମସ୍କାର । କରୁଛି ରହି ମର୍ତ୍ତ୍ୟପୁର ॥
କୋଟି ସୂର୍ଯ୍ୟର ସମ ପ୍ରଭା । ଯେ ଦୀପ୍ତି ଚମତ୍କାର ଶୋଭା ॥
ହସ୍ତରେ ଧର ଶରାସନ । ଖଚିତ କୁଣ୍ଡଳରତନ ॥
ଅମ୍ବର ଯାର ସ୍ୱର୍ଣ୍ଣବର୍ଣ୍ଣ । ନାମ ଜପିଣ ଦେବଗଣ ॥
ଭବସାଗରୁ ପାର ହେବେ । ଅଭୟ ପଦକୁ ପାଇବେ ।୧୬୦।
ଅର୍ଦ୍ଧୋଦିତ କମଳନୟନ । ସୁନ୍ଦର ନୀରଦ ବରନ ॥
ରହିଛ ଲକ୍ଷ୍ମଣ ସଙ୍ଗର । ତୁମ୍ଭ ଚରଣେ ନମସ୍କାର ॥
ଅହଲ୍ୟା ପରମାତ୍ମା ରାମ । ସ୍ତୁବାଦ କରଣ ପ୍ରଣାମେ ॥
ପତି ସେବାକୁ ଅନୁମତି । ଯିବାକୁ ମାଗଇ ସମ୍ପ୍ରତି ॥
ଅହଲ୍ୟା ସ୍ତବ ଭକ୍ତିଭରେ । ଉଚ୍ଚାରନ୍ତରେ ଯେ ମନରେ ॥
ତକ୍ଷଣେ ପାପ କ୍ଷୀଣ ହୋଇ । ପରମ ବ୍ରହ୍ମେ ମିଶେ ଯାଇଁ ॥
ଯେ ବନ୍ଧ୍ୟା ନାରୀ ହୃଦପଦ୍ମେ । ସ୍ଥାପନ କରନ୍ତି ଶ୍ରୀରାମେ ॥
ପୁତ୍ରକାମନା ଅଳେ ଭାର । ବର୍ଷକେ ପାଇବ କୁମର ॥
ଶ୍ରୀରାମେ ଅନୁଗ୍ରହ ଜାଣ । କାମନାସିଦ୍ଧ ହେବ ପୁଣ ॥

ଯେ ନର ଦ୍ରୋହ ବ୍ରହ୍ମଘାତୀ । ଗୁରୁପତ୍ନୀଙ୍କୁ ହରେ ଜତ ।
ସୁରା ପିଇଣ ବସ୍ତ୍ରେ ଧନ । ନଧନ ଭ୍ରାତୃ ମାତୃଗଣ ॥
ଅବର ରୋଗିଗଣ ଯେତେ । ଯେ ଭୋଗ ବାଞ୍ଛା ଅନ୍ତରତେ ॥
ସୁବର୍ଣ୍ଣ ଚୋର କ୍ରନ୍ଥିଲେ । ଅହଲ୍ୟା ସ୍ତବ ପାଠକଲେ ॥
ପ୍ରତ୍ୟହ ସ୍ତବ ପାଠକରୁ । ଶ୍ରୀରାମ ହୃଦୟେ ସୁମରି ॥
ନିର୍ବାଣ ମୁକ୍ତି ପଦ ପାଏ । ଅନ୍ତେ ପରମ ଶାନ୍ତ ହୁଏ ॥
ଶ୍ୟାମଚରଣ କହେ ଅଘ । ବାଞ୍ଛା ପୂରାଅ ସୀତାନାଥ ।୧୮୬।

ଇତି ଶ୍ରୀବ୍ରହ୍ମାଣ୍ଡପୁରାଣେ ଉତ୍ତରଖଣ୍ଡେ ଶ୍ରୀମଦଧ୍ୟାତ୍ମରାମାୟଣେ ଉମା-
ମହେଶ୍ୱର ସମ୍ବାଦେ ବାଲକାଣ୍ଡେ ନାମୋ ପଞ୍ଚମୋଽଧ୍ୟାୟଃ ।

—o*o—

## ଷଷ୍ଠ ଅଧ୍ୟାୟ ।

### ଶ୍ରୀମହାଦେବ ଉବାଚ ।

କୌଶିକ କହିଲେ ଶ୍ରୀରାମ । କରିବା ମିଥିଳା ଗମନ ।
ଦର୍ଶନ ମହାଯଜ୍ଞ କରି । ଆସିବା ଅଯୋଧ୍ୟାକୁ ଫେରି ॥
ରାମଙ୍କୁ ଘେନିଣ ସଙ୍ଗରେ । ପ୍ରବେଶ ହେଲେ ଗଙ୍ଗାତୀରେ ॥
ନାବକେ ଡାକିଣ ବହନ । ନାବ ଭୁମ୍ବର କୂଳେ ଆଣ ॥
ନାବିକ ଏ କଥା ଶୁଣିଣ । ରାମଙ୍କୁ କରିଲା ବାରଣ ॥
ଚରଣରେଣୁରେ ପଥର । ପାଇଲା ନାରୀ କଳେବର ।
କାଷ୍ଠ ପାଷାଣ ହୁଏ ସମ । ପ୍ରଭେଦ ନୋହେ କଦାଚନ ।
ଶ୍ରୀରାମ ପଦପ୍ରକ୍ଷାଳନ । ନାବେ କରନ୍ତୁ ଆରୋହଣ ।
ନୋହିଲେ ପଦରଜ ସ୍ପର୍ଶେ । ତରଣି ନାରୀ ହେବ ଶେଷେ ।
ଆମ୍ଭ ସହିତେ ପରିବାର । ଅନାସ୍ଥା ଘଟିବ ତାହାର ।୧୦।
ଧଉତ କରିଲା ଚରଣ । ପରପାରକୁ ନେଲା ପୁଣ ।
ଶ୍ରୀରାମ କୌଶିକ ନନ୍ଦନ । ମିଥିଳା କରିଲେ ଗମନ ॥
ପଥରେ ଋଷିଙ୍କ ଆଳୟ । ପ୍ରବେଶ ପ୍ରଭାତ ସମୟ ।

କୌଶିକ ଆଗମନ ଶୁଣି । ଶତାନନ୍ଦଙ୍କୁ ସଙ୍ଗେ ଘେନି ॥
ବେଗରେ ରାଜା ଚଳିଗଲେ । କୌଶିକର ଦର୍ଶନ କଲେ ॥
ବହୁବିଧରେ ପୂଜା କରି । ମୁନି ଚରଣ ଶିରେ ଧରି ॥
ଦେଖିଲେ ଚନ୍ଦ୍ରବଦନ । ସୁନ୍ଦର ଶ୍ରୀରାମ ଲକ୍ଷ୍ମଣ ॥
ବିଶ୍ୱାମିତ୍ରଙ୍କୁ ପଚାରିଲେ । ଏ ନର ନାରାୟଣ ତୁଲେ ॥
ଦେବଙ୍କ ସୁତ ହେବେ ଏହୁ । ମୋ ମନ ସୁଖୀ ଭଲ ହୋଇ ॥
ନରର୍ଷିଙ୍କ ସମ ତୁଲ । ହୋଇବେ କୁମାର ଯୁଗଳ ।୨୦।
ଆଦିତ୍ୟ ଜବା ଶଶଧର । ତେଜରେ ସର୍ବଦା ସୁନ୍ଦର ॥
ଦଅ ଏହାଙ୍କ ପରିଚୟ । ଅଟନ୍ତି କାହାର ତନୟ ॥
ରାଜାଙ୍କୁ କହନ୍ତି ବିଶ୍ୱାମିତ୍ର । ଦଶରଥଙ୍କ ଦେବପୁତ୍ର ॥
ଶ୍ରୀରାମ ଲକ୍ଷ୍ମଣ ନନ୍ଦନ । ଜଗତେ ଏ ନାମ ବିଖ୍ୟାତ ॥
ଆମ୍ଭର ଯଜ୍ଞ ରକ୍ଷିବାକୁ । ଚଳିଲୁ ଅଯୋଧ୍ୟା ଦେଶରୁ ॥
ପିତାଙ୍କୁ କହି ଏ ବଚନ । ସଙ୍ଗରେ ଶ୍ରୀରାମ ଲକ୍ଷ୍ମଣ ॥
ଶ୍ରୀରାମ ଆଗମନ କାଳେ । ଧନୁ ଧରଣି ଅଳଙ୍କରିଲେ ॥
[illegible] ଆମ୍ଭର କଥାରେ । ତାଡ଼କା ବାଣକେ ବଧିଲେ ॥
ଅନ୍ତ ଆଶ୍ରମେ ଆଗମନ । ସୁବାହୁ ପ୍ରଭୃତି ଜୀବନ ॥
ଯତ୍ନେ ଧନୁରେ ଦେଲେ ଗୁଣ । ମାରତେ କଲେ ଦୁଷ୍ଟମାନ ।୩୦।
ଉଡ଼ାଇ ନେଲେକ ସିନ୍ଧୁରେ । ପଡ଼ିଲା ସମୁଦ୍ରତଟରେ ॥
ଜାହ୍ନବୀତୀରେ ପଦାର୍ପିଲେ । ଅହଲ୍ୟା ଶାପୁ ଉଦ୍ଧରିଲେ ॥
ତାହାଙ୍କ ପାଦ ସ୍ପରଶରେ । ପାଷାଣ ନାରୀ ରୂପଧରେ ॥
ଅହଲ୍ୟା ନାରୀ ରୂପ ହୋଇ । ଶ୍ରୀରାମ ଚରଣେ ପଡ଼ିଲ ॥
ଯଥାବିଧିରେ ପୂଜା କରି । ରାମ ଚରଣ ଶିରେ ଧରି ॥
ଯେ ହରଧନୁ ତୁମ୍ଭ ଘରେ । ଦେଖିବେ ଅତି ସ୍ନେହଭରେ ॥
ଆସିଅଛନ୍ତି ଏ ନଗର । କେ ରାଜା ମନ କର ସ୍ଥିର ॥
ଶୁଣିଅଛନ୍ତି ଯାହା ଶୁଣ । ଦେଖି ଫେରନ୍ତି ନୃପଗଣ ॥

ଶୀଘ୍ରେ ହରଧନୁ ଆଣ । ଦେଖିବେ ଶ୍ରୀରାମ ଲକ୍ଷ୍ମଣ ॥
ଦେଖିବେ ବୋଲି ଶରାସନ । ଅଯୋଧ୍ୟା ଦେଶୁ ଆଗମନ ।
ଏ ହେତୁ ଉତ୍କଣ୍ଠିତ ମନ । ଏତାଙ୍କୁ କହୁଣ ଏସନ ॥
ମନ୍ତ୍ରିବରଙ୍କୁ ଡାକ ପୁଣ । ହରଧନୁଙ୍କୁ ଶୀଘ୍ର ଆଣ ॥
ଯତ୍ନ କରଣ ଧନୁ ଆଣ । ଦେଖାଅ ରାମେ ତତକ୍ଷଣ ॥
ଆଦେଶ ପାଇ ମନ୍ତ୍ରିବର । ଚଳିଣ ଗଲେ ଧନୁଘର ॥
କହେ ମିଥିଲା ଅଧୀଶ୍ୱର । ଶୁଣ ହେ କୌଶିକ ପ୍ରବର ॥
ଯେବେ ଧନୁ ରାମ ଧରେ । ସେ ଗୁଣ ଆରୋପଣ କରେ ॥
ଜାନକୀ ବଧୂ କରାଇବ । ଶ୍ରୀରାମ ହସ୍ତେ ସମର୍ପିବ ॥
କୌଶିକଋଷି ତଦନ୍ତରେ । ତଥାସ୍ତୁ ବୋଲିଣ ସତ୍ୱରେ ॥
ଶ୍ରୀରାମ ସହର୍ଷ ବଦନ । କୌଶିକ କହନ୍ତି ବଚନ ॥
ମୁନି କହୁଲେ ହେ ରାଜନ । ଶ୍ରୀରାମଚନ୍ଦ୍ର ଶରାସନ ।
ସାମାନ୍ୟ ଧନୁ ପ୍ରାୟେ ମଣି । ଭାଙ୍ଗିବେ ତାକୁ ଏହିକ୍ଷଣି ॥
ଏ ହେତୁ ଏହୁ ନିବେଦନ । ଶୀଘ୍ର କର ଯା ଆୟୋଜନ ॥
ସତ୍ୱରୁ ଅବିଲମ୍ବେ ଆଣ । ଶ୍ରୀରାମେ ଦେଖାଅ ବହନ ॥
ମୁନିବରଙ୍କ ବାକ୍ୟ ପରେ । ଦେଖୁଲେ ଧନୁକୁ ଯାହାରେ ॥
ପାଞ୍ଚ ସହସ୍ର ଯୋଦ୍ଧାଗଣ । ଧନୁକୁ ଆଣନ୍ତି ବହିଣ ॥
ଅବର ଘଣ୍ଟା ଶଙ୍ଖ ନାଦ । ମାଣିକ୍ୟ ମଣିରେ ଜଡ଼ିତ ॥
ଭୂଷିତ ସ୍ୱର୍ଣ୍ଣ ପଟ୍ଟବସ୍ତ୍ର । ସଭାରେ ହେଲେ ଉପସ୍ଥିତ ॥
ଶ୍ରେଷ୍ଠ ମନ୍ତ୍ରିଙ୍କୁ ଡାକି ପୁଣ । ରାମେ କରାଅ ଦରଶନ ॥
ସେ ଶରାସନ ଦରଶନେ । ନଥିଲା ହୋଇ ଭାବ ମନେ ॥
ମନ ଆନନ୍ଦ ପ୍ରଫୁଲ୍ଲରେ । କଟୀବସ୍ତ୍ରକୁ ତଦନ୍ତରେ ।
ବାନ୍ଧିଲେ ଅତି ଦୃଢ଼ଭାବରେ । ସହଜେ ଧରି ବାମକରେ ॥
ଧନୁକୁ କରି ଉତ୍ତୋଳନ । ଶରେ କ୍ୟା କରିଲେ ରୋପଣ ॥
ମନରେ ଅନ୍ୟ ନ ଭାବନ୍ତେ । ସମସ୍ତ ନୃପ ଦେଖୁଥିଲେ ॥

ଅଶ୍ଚର୍ଯ୍ୟ ଦେଖି ନୃପଗଣ । ଶ୍ରୀରାମେ କରୁ ଏକ ଧ୍ୟାନ ॥
ଦକ୍ଷିଣ ହସ୍ତେ ଦେଲେ ଗୁଣ । କରଲେ ଅଳ୍ପ ଆକର୍ଷଣ ॥
ଭାଙ୍ଗିଲେ କୋଦଣ୍ଡକୁ ହେଳେ । ଭୀଷଣ ଶବ୍ଦ ସେହି କାଳେ ॥
ଶବ୍ଦ ଉଠିଲା ଭୟଙ୍କର । ଆକାଶ ମର୍ତ୍ତ୍ୟ ରସାତଳ ॥
ଅବର ଦଶଦିଗମାନ । ସେ ଶବ୍ଦେ ହେଲା କମ୍ପମାନ ॥
ସ୍ୱର୍ଗରେ ଦେବତା ସକଳ । ହୃଷ୍ଟେ ହୋଇଲେ କାତର ॥
କରିଲେ ପୁଷ୍ପ ବରଷଣ । ପୂଜାଦି ସ୍ତବ କଲେ ପୁଣ ।୭୦।
ଦୁନ୍ଦୁଭି ବାଦ୍ୟ ଘନ ଘନ । ଧ୍ୱନିରେ ପୂରିଲା ଗଗନ ()
ଅପ୍ସରାଗଣ ଯେତେ ଥିଲେ । ନୃତ୍ୟ ଆରମ୍ଭ ସେ କରିଲେ ॥
ତାନମାନରେ କଲେ ଗାନ । ମାନବେ ଆନନ୍ଦରେ ପୂର୍ଣ୍ଣ ॥
ଦେଖି ମିଥିଳା ଅଧିପତି । ମନେ ଆନନ୍ଦ ହୁଏ ଅତି ॥
ଦ୍ୱିଖଣ୍ଡ ଦେଖି ହରଧନୁ । ସନ୍ତାପ ଛାଡ଼ିଲା ତା ମନୁ ॥
ଶ୍ରୀରାମେ ଅଳଙ୍କନ ବେଷ । ପୁର ପ୍ରାଙ୍ଗଣେ ପରବେଶ ॥
ଆନନ୍ଦ ମନେ ପୁଲକିତ । ତାଙ୍କ ସକଳ ସୀତାମାତ ॥
ସହର୍ଷେ ମିଳି ଏକସ୍ଥାନ । ହରଷେ ହୃଷ୍ଟେ ମଗନ ॥
ସେକାଳେ ସୀତା ମୃଗାନନା । ଅଟନ୍ତି ସୁବର୍ଣ୍ଣ ବରଣା ॥
ଅଙ୍ଗରେ ସକଳ ଭୂଷଣ । ସଙ୍ଗେ ଅଛନ୍ତି ସଖୀଗଣ ।୮୦।
ଦକ୍ଷିଣ ହସ୍ତେ ସ୍ୱର୍ଣ୍ଣମାଳା । ସଭାରେ ପ୍ରବେଶ ମହିଳା ।
ଶୋଭାକୁ ନାହିଁ ପଟାନ୍ତର । ଗଳେ ଖେଳଇ ମୁକ୍ତାହାର ॥
କର୍ଣ୍ଣରେ କଣ୍ଠିର ଭୂଷଣ । ଶ୍ରୀଅଙ୍ଗେ ବସ୍ତ୍ର ପରିଧାନ ॥
ଶୋଭା ଦିଶଇ ଚମତ୍କାର । ଚରଣେ ବାଜଇ ନୂପୁର ॥
ଅତି ସୁନ୍ଦର ଧ୍ୱନି କରେ । ବାଜଇ ଯୁଗଳ ପୟରେ ।
ଦିଶଇ ବସ୍ତ୍ର ଅଭ୍ୟନ୍ତର । ଶୋଭା ଯୁଗଳ ପୟୋଧର ॥
ବସ୍ତ୍ର ଫୁଟିଣ ଦେଖାଯାଏ । ସେ ଶୋଭା ବର୍ଣ୍ଣି ପାରେ କିଏ ॥
ଶ୍ରୀମୁଖେ ମୃଦୁ ମନ୍ଦହାସ । ଶ୍ରୀରାମ ନିକଟେ ପ୍ରବେଶ ।

ଗଳାରେ ସ୍ୱର୍ଣ୍ଣମାଳା ଦେଲେ । ଆନନ୍ଦ ସାଗରେ ବୁଡ଼ିଲେ ॥
ସମସ୍ତ ରାଜସ୍ତ୍ରୀଗଣ । ଗବାକ୍ଷମାର୍ଗେ ଦରଶନ ।
ହରଷ ଆନନ୍ଦତମନ । ସଙ୍ଗରେ ଘେନ ରାମାଗଣ ॥
ଆରମ୍ଭ କଲେ ହୁଳହୁଳି ଧ୍ୱନି । ମୋକ୍ଷ ହୋଇବେ ନରେ ଶୁଣି ॥
ପଣ୍ଡିତ ଜନକ ରାଜନ । କହିଲେ ବିଶ୍ୱାମିତ୍ର ଶୁଣ ॥
କରୁଛୁ ଏହି ନିବେଦନ । ପୁତ୍ରଙ୍କ ବିବାହ ସାଧନ ॥
ଅଯୋଧ୍ୟା ଦେଶୁ ଦଶରଥ । ଆସିବେ ମନ୍ତ୍ରୀ ପତ୍ନୀ ପୁତ୍ର ॥
ପ୍ରବେଶ ଆମ୍ଭ ନିକେତନ । ସମସ୍ତ କାର୍ଯ୍ୟ ହେବ ପୂର୍ଣ୍ଣ ॥
ପାଇଲେ ତୁମ୍ଭ ହସ୍ତପତ୍ର । ଅବିଳମ୍ବରେ ଯିବେ ଦୂତ ॥
ତଥାସ୍ତୁ କହେ ମୁନିବର । ପ୍ରେରଣ କଲେ ଶୀଘ୍ର ଚର ॥
ଅଯୋଧ୍ୟା ନଗରେ ପ୍ରବେଶ । କହିଲେ ଶ୍ରୀରାମ ସନ୍ଦେଶ ॥
ଶୁଣି ପୁତ୍ରଙ୍କ ବ୍ୟବହାର । ଭାସିଲେ ଆନନ୍ଦ ସାଗର ।
ମନ୍ତ୍ରିଙ୍କି ଡାକି ଦଶରଥ । କହିଲେ ସକଳ ବୃତ୍ତାନ୍ତ ॥
ଶୀଘ୍ର କରିଣ ସୈନ୍ୟଗଣ । ମିଥିଳା ନଗରେ ପ୍ରେରଣ ॥
ଗଜଆରୋହି ଛତ୍ର କେତେ । ଅଶ୍ୱଆରୋହି ଶତେ ଶତେ ॥
ଆବର ରଥିମାନେ ପୁଣ । ପଦାତି ସଙ୍ଗରେ ଘେନିଣ ॥
ମିଥିଳା କରନ୍ତୁ ଗମନ । ଶୀଘ୍ରେ ମୁଁ କରିବି ପ୍ରସ୍ଥାନ ॥
ରଥ ସଜାଇ ବେଗେ ଆଣ । ବିଳମ୍ବେ ନାହିଁ ପ୍ରୟୋଜନ ॥
ଗୁରୁ ବଶିଷ୍ଠ ମହାମୁନି । ସଙ୍ଗରେ ନିଜ ଭାର୍ଯ୍ୟା ଘେନି ॥
ଆବର ତବୁ କ୍ଷେମ୍ୟ ଅଗ୍ନି । ସବାଗ୍ରେ ଶ୍ରୀରାମ ଜନନୀ ॥
ଏରୂପେ କରଲେ ପ୍ରେରଣ । ରାଜା ରଥରେ ଆରୋହଣ ॥
ବିପୁଳ ସୈନ୍ୟ ସହିତରେ । ପ୍ରବେଶ ବିଦେହ ନଗରେ ।
ଜନକ ଶୁଣି ଆଗମନ । ପ୍ରେମେ ଆନନ୍ଦ କଲେ ମନ ॥
ଶତାନନ୍ଦଙ୍କ ସହିତରେ । ରାଜା ଚଳିଲେ ଧୀରେ ଧୀରେ ॥
ଯେ ସ୍ଥାନେ ଥିଲେ ଦଶରଥ । ପ୍ରବେଶ ହୋଇଲେ ତୁରିତ ॥

ଶାସ୍ତ୍ରୋକ୍ତ ଉପଗୃହରେ ପୁଣ । କରିଲେ ଅତି ସନମାନ ॥
ବହୁମଣ୍ଡପରେ ଅଗମନ । ସକଳ କଲେ ସମାପନ ॥
ତଦନ୍ତେ ଶ୍ରୀରାମ ଲକ୍ଷ୍ମଣ । ପିତାଙ୍କ ଚରଣ ବନ୍ଦନ ॥
କଲେ ଦଶରଥ ପୁଣ । ହର୍ଷେ ରାମେ କରି ସମ୍ବୋଧନ ।
ଭାଗ୍ୟରେ ପଙ୍କଜନୟନ । ସୁଖେ ତୁ କଲି ଦରଶନ ॥
କୌଶିକମୁନିଙ୍କ କୃପାରେ । ଅସାଧ କାର୍ଯ୍ୟ ସହଜରେ ।
ଯାହା କରିଲେ ମୁନିବର । ସୁଝି ନ ପାରେ ଉପକାର ।୧୬୦।
ପୁତ୍ରଙ୍କୁ ଆଲିଙ୍ଗନ କରି । ମସ୍ତକାଘ୍ରାଣ ଦଣ୍ଡଧାରି ।
ସେ ଜନ ହୁଏ ବ୍ରହ୍ମାନନ୍ଦ । ସମାନ ନିମଗ୍ନ ଆନନ୍ଦ ।
ଜନକ ଗୃହେ ଭୋଗମୂର୍ତ୍ତି । ହରଷେ ରହିଲେ ସେ ସ୍ଥାନ ॥
ବିବାହ ଲଗ୍ନ ଉପସ୍ଥିତ । ଧର୍ମଜ୍ଞ ଭ୍ରାତୃଙ୍କ ସହିତ ॥
କହିଲେ ଜନକ ରାଜନ । କର ବିବାହ କାର୍ଯ୍ୟମାନ ॥
ସଂଗ୍ରାମ ଶ୍ରୀରାମେ ଆସିଲେ । ସେ ସଭା ସୁନ୍ଦର ଦେଖିଲେ ॥
ଚନ୍ଦ୍ରାତପରେ ସୁସଜ୍ଜିତ । ତୋରଣ ଦ୍ୱାର ସୁଗଠିତ ॥
ମୁକ୍ତାଦାମଯୁକ୍ତ ଫଳଫୁଲ । ଅତି ଶୋଭନ ଚମତ୍କାର ।୧୭୦।
ଦେଖିଲେ ଶ୍ରେଷ୍ଠ ସଭାପର । ରତ୍ନମୟ ସ୍ତମ୍ଭ ଗୃହ ॥
ଅତର ସମାନ ଭାବରେ । ସଜ୍ଜିତ ବିବିଧ ପ୍ରକାରେ ।
ଦୈବଜ୍ଞ ବ୍ରାହ୍ମଣ ଡକାଇ । ସୁବର୍ଣ୍ଣକାରଙ୍କୁ ଅଣାଇ ॥
ସର୍ବେ ସଭାରେ ପ୍ରବେଶିଲେ । ଭେରୀ ଦୁନ୍ଦୁଭି ବଜାଇଲେ ।
ଅପର ଦିଗରେ କାମିନୀ । ନାରୀମାନେ ଅଳଙ୍କାର ଘେନି ।
ବହ୍ନିଜଡ଼ିତ ମଣ୍ଡପନ । ରାମଙ୍କୁ ବସାଇ ରାଜନ ।
ବଶିଷ୍ଠ ବିଶ୍ୱାମିତ୍ର ମୁନି । ବସିଲେ ଦୁଇ ପାର୍ଶ୍ୱେ ପୁଣି ॥
ପୁରୋଧ ଶତା ନନ୍ଦ ପୂଜା । କରିଲେ ବସାଇଣ ରାଜା ।
ନୟନେ ଅଗ୍ନି ପ୍ରଜ୍ୱଳନ । ଜାନକୀ ଆଣିଲେ ସେସ୍ଥାନ ॥
ଜନକପତ୍ନୀ ସଙ୍ଗେ ଆସି । ବହୁତ ରାମେ ପଚାରିସି ।

ଚରଣ ଯୁଗ ପ୍ରକ୍ଷାଳନ । ସେ ବ୍ରହ୍ମବାଦୀ ମୁନିଗଣ ॥
ଯତନେ ଯୁଗଳ ଚରଣ । ଶିରେ ଧାରଣ ସର୍ବ କ୍ଷଣ ।୧୪୦।
ସେ ପଦ ପ୍ରକ୍ଷାଳନ ବାରି । ଜନକ ରାଜା ଶିରେ ଧରି ॥
ଅକ୍ଷତ ମିଶାଇଣ ବାରି । ପ୍ରକ୍ଷେପ କଲେ ରାମୋପରି ॥
ସୀତାଙ୍କ ପାଣି ରାମକରେ । ପ୍ରଦାନ ବିଧି ଅନୁସାରେ ॥
ଭୂଷଣ ଯୁକ୍ତ ସ୍ୱର୍ଣ୍ଣ ମୁକ୍ତା । କମଳନୟନା ଦୁହିତା ॥
ଆନନ୍ଦେ କରି ସମ୍ପ୍ରଦାନ । ମୋଠାରେ ହୁଅ ସୁପ୍ରସନ୍ନ ॥
ସିନ୍ଧୁ ଲକ୍ଷ୍ମୀ ନାରାୟଣ । ଅର୍ପଣ କରିଲେ ଯେସନ ॥
ତେସନ ସୀତା ରାମେ ଦେଇ । ପରମ ସୁଖ ମନେ ପାଇ ॥
ତତ୍ପରେ ଊର୍ମିଳା ଆତ୍ମଜା । ଲକ୍ଷ୍ମଣେ ବିଭା ଦେଲେ ରାଜା ॥
ଅବର ଭ୍ରାତୃ ଦୁଇକନ୍ୟା । ମାଣ୍ଡବୀ ଶ୍ରୁତକୀର୍ତ୍ତି ଧନ୍ୟା ॥
ଭରତ ଶତ୍ରୁଘ୍ନେ ପ୍ରଦାନ । ଅତରେ ରାଜା କଲେ ପୁଣ ॥
ଚତୁର ଭ୍ରାତ ସୁଲକ୍ଷଣ । ବିଭା ହୋଇଲେ ଶୁଭକ୍ଷଣ ॥
କୌତୁକ ସାଜେ ମନୋହର । ବରଜେ ଲୋକପାଳ ଭୁଲ ॥
କହେ ମିଥିଳା ଅଧୀଶ୍ୱର । ବଶିଷ୍ଠ କୌଶିକ ଆଗର ॥
ସୀତାଙ୍କ ବୃତ୍ତାନ୍ତ ବର୍ଣ୍ଣନ । ନାରଦ କହିଛନ୍ତି ଶୁଣ ॥
ଯଜ୍ଞଭୂମିକୁ ପରସ୍ପର । ଲଙ୍ଗଳେ ଚଷି ଏକବାର ॥
କର୍ଷଣ କରିବାର ବେଳ । ଉଠିଲା ସୁଖ ସୁବିମଳ ॥
ତାହାର ମୁଖ ଦେଖି ମନ । ଭାବିଲି ଅମୂଲ୍ୟ ରତନ ॥
ଆମ୍ଭର ପତ୍ନୀକୁ ଡାକିଣ । ତା ହସ୍ତେ କଲି ସମର୍ପଣ ॥
ଯତନେ ରଖିବ ଯେ ସୁତା । ପାଳିବ ଛାଡ଼ି ମନ ଚିନ୍ତା ॥
ହେନ ନାରଦ ମୁନିବର । ପ୍ରବେଶ ହେଲେ ଆମ୍ଭପୁର ॥
ବୀଣା ଯନ୍ତ୍ରରେ ଧରି ତାନ । କରନ୍ତି ନାନା ହରିଗାନ ॥
ଆମ୍ଭଙ୍କୁ ଦେଲେ ଦରଶନ । ପୂଜା କରିଲୁଁ ତତକ୍ଷଣ ॥
ବସାଇ ଦିବ୍ୟ ଆସନରେ । କି କାର୍ଯ୍ୟେ ଆସିଛ ପୁରରେ ॥

ନାରଦ ଶୁଣି ମୋ ବଚନ । ହର୍ଷରେ କହିଲେ ତତ୍‌କ୍ଷଣ ॥

ନାରଦ ଉବାଚ ।

ତୁମ୍ଭର ଉଚିତ ସାଧନ । କହିବୁଁ ରହସ୍ୟ ଗୋପନ ॥
ପରମ ଆତ୍ମା ନାରାୟଣ । ତୋଷିବେ ଭକ୍ତଙ୍କର ମନ ॥
ତହୁଁରେ ଦେବକାର୍ଯ୍ୟମାନ । ଯତନେ କରିବେ ସାଧନ ॥
ଦଶାନନକୁ ବଧିବାରେ । ମାୟାରେ ନରରୂପ ଧରେ ॥
ଶ୍ରୀରାମ ନାମରେ ବିଖ୍ୟାତ । ନୃପତି ଦଶରଥସୁତ ॥
ଜନମିଅଛନ୍ତି ଧରାରେ । ବସ୍ତ୍ରେକ ଚତୁର ରୂପରେ
ଜାନକୀ ଯୋଗମାୟା ପୁଣ । ତୁମ୍ଭର ଗୃହେ ଅବତୀର୍ଣ୍ଣ ॥
ଶ୍ରୀରାମ ପତ୍ନୀ ସେ ହୋଇବେ । ଅନ୍ୟ କାହାକୁ ନ ଛୁଇଁବେ ॥
ତାହାଙ୍କୁ ଅତି ଯତ୍ନରେ । ପ୍ରଦାନ କରିବ ରାମରେ ॥
ନାରଦ କହି ଏହି ବାକ୍ୟ । ପ୍ରସ୍ଥାନକଲେ ଦେବଲୋକ ॥
ସୀତାଙ୍କୁ ଲକ୍ଷ୍ମୀ ଭାବି ମନ । ନାରାୟଣଙ୍କ ଆଗମନ ॥
ଭାବି କି ଉପାୟେ ଧରିବି । ଶ୍ରୀରାମେ ସୀତା ସମର୍ପିବି ॥
ସହସା ମନରେ ସ୍ମରଣ । କରିଣ ତ୍ରିପୁର ଦଳନ ॥
ପଞ୍ଚଆନନ ଭଗବାନ । ମୋ ଚିତାମଧ୍ୟ ନିକେତନ ॥
ଅଦ୍ଭୁତ ଧନୁ ନିରୁପମ । ରଖିଲେ ଅତି ଯତ୍ନେ ପୁଣ ॥
ସେ ଧନୁ ଭଙ୍ଗ ଯେ କରିବ । ସୀତାଙ୍କୁ ବିବାହ ହୋଇବ ।୧୮୦।
ଏପରି ପଣ କରି ସ୍ଥିର । ରହିଛି ଶୁଣ ମୁନିବର ॥
ଆସି ଅନେକ ନୃପଗଣ । ଫେରନ୍ତି ପାଇ ଅପମାନ ॥
ପରେ ଶୁଣିଲି ଦାଶରଥି । ଧନୁ ଦେଖିବେ ଆସିଛନ୍ତି ॥
ଆପଣ କୃପା ଅନୁସାରେ । ଆସିଲେ ରାମ ମମାଗାରେ ॥
ଆମ୍ଭର ମନୋରଥ ପୂର୍ଣ୍ଣ । କହୁଛୁଁ ଶୁଣ ତପୋଧନ ॥
ଆଜିରେ ସେହି ରଘୁବର । ତେଜରେ ସମ ଦିବାକର ॥
ସୀତା ସହିତେ ଏକାସନେ । ଦେଖିଲୁଁ ଆମ୍ଭେ ଦିନମ୍ବନେ ॥

ଆମ୍ଭର ଜନମ ସଫଳ । ହୋଇଲା ଭୁବନ ମଙ୍ଗଳ ॥
ସୃଷ୍ଟିର ପ୍ରବର୍ତ୍ତକକାରି । ତୁମ୍ଭର ଶ୍ରୀଚରଣ ବାରି ॥
ଅଦ୍ୟରେ କରନ୍ତି ଧାରଣ । ବାସନା ନାଶ ସର୍ବକ୍ଷଣ ।୧୯୦।
ଯେ ବାରି ଧରି ଶିରୋପର । ହଲେ ଧଇଲେ ଅଧୀଶ୍ୱର ॥
ସ୍ୱର୍ଗରେ ହୋଇଲେ ସେ ରଜା । ଦେବତାମାନେ କଲେ ପୂଜା ॥
ପରେ ତୁମ୍ଭର ଶ୍ରୀଚରଣ । ପତିଙ୍କ ଶାପ ବିମୋଚନ ॥
ଅହଲ୍ୟା ନାରୀ ରୂପ ହେଲା । ପତିସେବାକୁ ଚଳିଗଲା ।
ତୂର୍ଣ୍ଣ କା ହେତୁ ନାରାୟଣ । ଅନ୍ୟ ମୋ ନାହିଁ ତୁମ୍ଭ ଭିନ୍ନ ॥
ମୋର ରକ୍ଷନ୍ତା ନାହିଁ କେହି । ସର୍ବଦା ଚରଣ ବାଞ୍ଛଇ ॥
ଯେ ପାଦପଦ୍ମ ପରାଗରେ । ସେ ଅଭିଶପ୍ତାନୁରାଗରେ ॥
କାଳ ଚକ୍ରର ବଶୀଭୂତ । ଭୟରେ ହୋଇଛନ୍ତି ଆଶ୍ରିତ ॥
ଯୋଗିଗଣଙ୍କ ଭବଭ୍ୟ । କରିଅଛନ୍ତି ପରାଜୟ ॥
ପାର୍ବତୀ ପତି ସୁମରଣ । ଯା ନାମ ଜପେ ଦେବଗଣ ।୨୦୦।
ସର୍ବଦା କରନ୍ତି କୀର୍ତ୍ତନ । ଶୋକ ତ୍ରିତାପ ବିନାଶନ ॥
ଶୁଣିବା ହେତୁ ରଘୁବର । ମୋ ମନ ରହୁ ନିରନ୍ତର ।
ତୁମ୍ଭ ଚରଣେ ପ୍ରତିକ୍ଷଣ । ଶରଣ କରନ୍ତୁ ଗ୍ରହଣ ॥
ସ୍ତବ କରିଲେ ବହୁତର । ମିଥିଳା ରାଜ୍ୟ ଅଧୀଶ୍ୱର ॥
ଶତେକ କୋଟି ଦାସ ଦେଲେ । ଅୟୁତେ ରଥାଦି ସଙ୍ଗରେ ॥
ଦଶଲକ୍ଷକ ଅଶ୍ୱଗଣ । ବାରଣ ଛଅଶତ ପୁଣ ॥
ପଦାତି ଦେଲେ ଏକଲକ୍ଷ । ତିନଶ ଦାସୀ ଯେ ପ୍ରତ୍ୟକ୍ଷ ॥
ଉଲ୍ଲାସ ହୋଇ ନୃପ ମନେ । ଗଲେ ଦୁହିତା ସନ୍ନିଧାନେ ॥
ସୀତା ନିମନ୍ତେ ସମୁଜ୍ଜ୍ୱଳ । ଅପୂର୍ବ ମୁକ୍ତା ରତ୍ନହାର ॥
ବିଚିତ୍ର ବସନ ସୁନ୍ଦର । କୌତୁକେ ଦେଲେ ନୃପବର ॥
କରିଲେ ସବୁ ସମର୍ପଣ । ଆବର ବହୁ ଯତ୍ନବାନ ।
ବଶିଷ୍ଠଆଦି ମୁନିଗଣ । ଶ୍ରୀରାମ ଭରତ ଲକ୍ଷ୍ମଣ ॥

ଶତ୍ରୁଘ୍ନେ ଦେଖିଲେ ରାଜନ । ପୂର୍ବରୁ ଯେପରି ବିଧାନ ॥
କୁଣ୍ଠିତ ରାଜନ ଅନ୍ତରେ । ବିଦାୟ ଦାନ ଶୀଘ୍ର କରେ ॥
ଜାନକୀ ଜନନୀ ସମସ୍ତ । ସଜଳନୟନ ପୂରିତ ॥
ସୀତାର ସନ୍ମୁଖେ ଆସିଲେ । ସମସ୍ତେ ଆଲିଙ୍ଗନ କଲେ ॥
କହିଲେ ଶୁଣ ଏ ବଚନ । ସର୍ବଦା ସୁଖେ ଯାଉ ଦିନ ॥
ଶାଶୁଙ୍କ ସେବାରେ ରହିବ । ପତିଙ୍କ ଆଜ୍ଞା ପାଳୁଥିବ ॥
ଶ୍ରେଷ୍ଠ ଯେ ପତିବ୍ରତା ଧର୍ମ । ସେ ଧର୍ମ ପାଳିବ ଯତନ ॥
ଶ୍ରୀରାମ ବିଦାୟ ଗ୍ରହଣ । ପିତାଙ୍କ ରାଜ୍ୟକୁ ଗମନ ॥
ଉତ୍ସବ କଲେ ନରଗଣ । ବଜାଇ ନାନା ବାଦ୍ୟମାନ ॥
ସୁରଲୋକରେ ଦେବଗଣ । ସମସ୍ତ ମିଳି ଏକସ୍ଥାନ ॥
ଢୋଲ ଦୁନ୍ଦୁଭି ବାଦ୍ୟତୁରୀ । କଂସାଳ ଆଦି ଶଙ୍ଖ ଭେରୀ ॥
ସମସ୍ତ ଜୀବଗଣମାନେ । ବାଦ୍ୟ ଶୁଣିଣ ଉଲ୍ଲସେ ମନେ ॥
ଶ୍ରୀରାମ ପାଦେ ଦେଇ ମନ । ଶ୍ୟାମଚରଣ ଧନ୍ୟଜ୍ଞାନ ।୨୨୪।

ଇତି ଶ୍ରୀବ୍ରହ୍ମାଣ୍ଡପୁରାଣେ ଉତ୍ତରଖଣ୍ଡେ ଶ୍ରୀମଦଧ୍ୟାତ୍ମରାମାୟଣେ ଉମା ମହେଶ୍ୱର ସମ୍ବାଦେ ବାଲକାଣ୍ଡେ ନାମ ଷଷ୍ଠୋଽଧ୍ୟାୟଃ ।

—ଃ୦ଃ୦ଃ—

## ସପ୍ତମ ଅଧ୍ୟାୟ ।

ଶ୍ରୀ ମହାଦେବ ଉବାଚ ।

ମିଥିଳା ନଗରୁ ଗମନ । ସମସ୍ତ ନୃପତିଙ୍କ ସୈନ୍ୟ ॥
ଦ୍ୱାଦଶ କୋଶ ପାରହେଲେ । ଅଶୁଭ ଲକ୍ଷଣ ଦେଖିଲେ ॥
ରାଜାଙ୍କ ମନରେ ବିସ୍ମୟ । କହିଁ ଭୀଷଣ ଏ ସମୟ ॥
କହିଲେ ବଶିଷ୍ଠ ଅଗ୍ରତ । ଦିଶୁଛି ଏ ବଡ଼ ଉତ୍ପାତ ॥
କହିଁ ଏ ଭୟ ଦରଶନ । କହ କିସ୍ପାଇଁ ଏହିକ୍ଷଣ ॥
ବଶିଷ୍ଠ କହନ୍ତି ନୃପତି । ଦେଖୁଛ ଉତ୍ପାତ ସମ୍ପ୍ରତି ॥
ଭବିଷ୍ୟତରେ ହେବ ଭୟ । ଅନ୍ତରେ ହୋଇବ ସେ କ୍ଷୟ ॥

ଦେଖ ଦକ୍ଷିଣେ ମୃଗଗଣ । ଏ ଚିହ୍ନ ମଙ୍ଗଳ କାରଣ ॥
ଏ କଥା ମୁନି କହୁଁ କହୁଁ । ଉଠେ ପ୍ରଚଣ୍ଡ ଶ୍ବସନ ବାୟୁ ॥
ଉଡ଼େ ବହୁତ ଧୂଳି ରାଶି । ଦୃଷ୍ଟିପଥକୁ ରୋଧେ ଆସି ।୫୦।
ମୁନିଙ୍କ ବାକ୍ୟରେ ନିର୍ଭର । ସକଳେ ହେଲେ ଅଗ୍ରସର
କୋଟିଏ ସୂର୍ଯ୍ୟ ତେଜପ୍ରଭା । ଚପଳା ସମ ପ୍ରାୟ ଆଭା ।
ବିସ୍ତାର କରି ତେଜରାଶି । ପ୍ରବେଶ ଯେ ସ୍ଥାନରେ ଆସି ॥
ମସ୍ତକ ଜଟାରେ ମଣ୍ଡିତ । ଅଭୂତ ନୀଳମେଘ ଗାତ୍ର ।
କ୍ଷତ୍ରିୟ ଗଣ ନାଶକର । ଯେ କାର୍ତ୍ତିବୀର୍ଯ୍ୟ ଧ୍ୱଂସକାରୀ ॥
ଭୃଗୁଙ୍କ ପୁତ୍ର ଶରାସନ । ହସ୍ତରେ କୁଠାର ଧାରଣ ॥
କାଳହନ୍ତକ ରୂପସମ । ନୃପ ସମ୍ମୁଖେ ବିଦ୍ୟମାନ ॥
ଭୟରେ ଦଶରଥ ରାଜା । ଭୁଲିଲେ ଅର୍ଘ୍ୟ ଅଦ୍ୟପୂଜା ॥
କହିଲେ ତାହା କାହିଁ ପୁଣ । ପ୍ରଣତ ତୁମ୍ଭର ଚରଣ ॥
ଶୁଣିବା ହେଉ ଭଗବାନ । କୃପା କରଣ ରଖ ପ୍ରାଣ ।୬୦।
ଆମ୍ଭ ପୁତ୍ରକୁ ରକ୍ଷାକର । ଶରଣ ପଦ୍ମରେ ତୁମ୍ଭର ॥
ଈର୍ଷାରେ ଇନ୍ଦ୍ରିୟ ଚଞ୍ଚଳ । ସେ କଥା ନ ମାନି ଚାଲିଲ ॥
ଅଶ୍ରଦ୍ଧା ବଚନ ରାଜାର । ନ ଶୁଣେ ତାହା ମହାବୀର ॥
ଶ୍ରୀରାମେ କଠୋର ବଚନ । କହିଲେ କ୍ରୋଧଭରେ ମନ ॥

ଜାମଦଗ୍ନ୍ୟବାଚ ।

କ୍ଷତ୍ରିୟାଧମ ମହାବଳ । ପ୍ରଦାନ ଦ୍ୱନ୍ଦ୍ୱଯୁଦ୍ଧକର ॥
ଧରାରେ ଅଛୁ ମୁଁ ଜୀବନ୍ତ । ଶ୍ରୀରାମ ନାମ ତୋର ଖ୍ୟାତ ॥
ରେ ଦୁରାଶୟ ଧରାତଳେ । ଏ କାର୍ଯ୍ୟ ସହି ମୁଁ ନ ପାରେଁ ॥
ଜୀର୍ଣ୍ଣଧନୁକୁ ଭଗ୍ନକର । ସ୍ୱଯଶ ଅହଙ୍କାର ପୁରି ॥
ଏକ୍ଷଣି ଆମ୍ଭ ଶରାସନ । ଶକ୍ତିରେ ଧର ଜ୍ୟା ରୋପଣ ॥
ନ କଲେ ଯୁଦ୍ଧ ତୁମ୍ଭ ସଙ୍ଗେ । କରିବି କହୁଅଛୁ ବେଗେ ॥
ସମସ୍ତ ଶମନ ସଦନ । ପ୍ରେରିତ କରିବି ଏକ୍ଷଣ ॥

କ୍ଷତ୍ରିୟ ନାଶନ ମୋ ବାନା । ତୁମ୍ଭେ ବାଳକ ଜାଣ ନା ॥
ପରଶୁରାମ ନାମ ମୋର । କ୍ଷତ୍ରିୟବଂଶ ନାଶକର ॥
ସେ କଥା କହନ୍ତେ ଘନ ଘନ । ବସୁଧା ହେଲା କମ୍ପମାନ ॥
ଅନ୍ଧଅନ୍ଧାର ଭୟଙ୍କର । ଅଦୃଶ୍ୟ ହେଲା ଚରାଚର ॥
ତତ୍ପରେ ବୀର ଦାଶରଥି । ସକୋପେ ନେତ୍ର ତାଙ୍କ ପ୍ରତି ॥
ତାହାଙ୍କ ହସ୍ତୁ ଧନୁ ନେଲେ । ସତ୍ୱରେ ଜ୍ୟା ରୋପଣ କଲେ ॥
ତୂଣିରୁ ବାଣକୁ ଗ୍ରହଣ । ସନ୍ଧାନେ ଧନୁ ଆକର୍ଷଣ ॥
ଶ୍ରୀରାମ କହିଲେ ବଚନ । ଭାର୍ଗବ ଆମ୍ଭ ବାକ୍ୟ ଶୁଣ ॥
ନୋହିବ ବାଣ ବ୍ୟର୍ଥ ମୋର । ଶୀଘ୍ର ଦେଖାଅ ଲକ୍ଷ୍ୟ ତାର ॥
ଅମ୍ଭର ଆଦେଶ ସତ୍ୱର । ସଞ୍ଚିତ ତପ ଯେ ତୁମ୍ଭର ॥
ତୀର୍ଥାଦି ଗଛ ଯେ ଅବର । କାହାକୁ ନାଶିବ ଏ ବାର ॥
ଏକ୍ଷଣି ଯିବ ଅନ୍ୟସ୍ଥାନ । ନ ମାନ ତୁମ୍ଭର ବାରଣ ॥
ଶ୍ରୀରାମ ବାକ୍ୟ ଶୁଣି ବୀର । ବିକୃତ ବଦନ ତାହାର ॥
ପୂର୍ବର ବୃତ୍ତାନ୍ତ ସ୍ମରଣ । ଭାର୍ଗବ କରି ତତକ୍ଷଣ ॥
ସକଳ ପୁରୁଷ ଉତ୍ତମ । କହିଲେ ମହାବାହୁ ଶୁଣ ॥

ଜାମଦଗ୍ନ୍ୟବାଚ ।

ଯେ ବସ୍ତୁ ପୁରାଣ ପୁରୁଷ । ଜଗତ ସୃଷ୍ଟି ସ୍ଥିତି ନାଶ ॥
ବାଲ୍ୟକାଳରେ କରି ମନ । କପଟ ବସ୍ତୁଙ୍କୁ ସାଧନ ॥
ଚକ୍ରତୀର୍ଥକୁ ଆଗମନ । ପ୍ରବେଶ ହେଲି ତୀର୍ଥସ୍ଥାନ ॥
ବହୁତ ତପ ଅନୁଷ୍ଠାନ । କପଟ ହେବୁ ନାରାୟଣ ॥
ଶଙ୍ଖ ରଥାଙ୍ଗ ଗଦାଧର । ପ୍ରସନ୍ନ ଆମ୍ଭର ଉପର ॥
ପ୍ରଫୁଲ୍ଲ ମନେ ନାରାୟଣ । ଆମ୍ଭଙ୍କୁ କହିଲେ ବଚନ ॥
ଯେ କାର୍ତ୍ତବୀର୍ଯ୍ୟ ପିତୃଘାତ । ତାହାଙ୍କୁ ବଧିବ ସମ୍ପ୍ରତି ॥
ହେ ବ୍ରହ୍ମନ୍ ତପ ଶ୍ରମକର । ସନ୍ତୋଷେ କହିଲେ ମୁରାରି ॥
ବହୁବର୍ଷ ତପ ସାଧି । ତପସ୍ୟାଫଳ ହେଲା ସିଦ୍ଧି ॥

ଶ୍ରୀ ଭଗବାନୁବାଚ ।

ଅମ୍ଭର ଚଉଶକ୍ତି ଧାରଣି । ସେ ଶକ୍ତି ଯୋଗରେ ଗମନ ।
ବଳିଷ୍ଠ କାର୍ତ୍ତବୀର୍ଯ୍ୟ ନାଶ । ତୁମ୍ଭଙ୍କୁ ଦେଲୁଁ ଉପଦେଶ ॥
କ୍ଷତ୍ରିୟ ନାଶିବ ଅବର । ପୃଥ୍ୱୀରେ ଏକବିଂଶ ବାର ॥
ଶେଷେ କଶ୍ୟପେ ଭୂମିଦାନ । ସୁଶାନ୍ତ ପାଇବ ଆପଣ ॥
ପରମା ଶକ୍ତି ଏ ସଂସାରେ । ବିନାଶ ଶୂନ୍ୟ ମୋରେ ବୋଲେ ।
ତ୍ରେତାରେ ଧରି ରାମ ନାମ । ଦଶରଥଙ୍କ ଗୃହେ ଜନ୍ମ ॥
ଅପେକ୍ଷା କର ସେ ସମୟ । ସାକ୍ଷାତ ହୋଇବ ନିଶ୍ଚୟ ॥
ସେକ୍ଷଣି ତେଜ ମମ ଦତ୍ତ । ଗ୍ରହଣ କରିବୁ ଉଚିତ ॥
ଚିରସହସ୍ର ଯୁଗମାନ । ପୃଥ୍ୱୀରେ କର ଅବସ୍ଥାନ ।
ଶ୍ରୀବିଷ୍ଣୁ କହିଣ ଏସନ । ତତ୍‌କ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ତାହାଙ୍କ ଆଜ୍ଞାକୁ ଧାରଣି । କରିଲୁଁ ସକଳ ସାଧନ ॥
ସେ ବିଷ୍ଣୁ ରୂପ ନିରାକାର । ଶ୍ରୀରାମରୂପେ ଅବତାର ॥
ଭୂମିରେ ହେଲେ ଅବତୀର୍ଣ୍ଣ । ବିଧିପ୍ରାର୍ଥନା କର ପୂର୍ଣ୍ଣ ॥
ଯେ ତେଜ ଶରୀରେ ଅମ୍ଭର । ଅନୁଗ୍ରହରେ ଦେଇଥିଲ ॥
ସେ ତେଜ ହରିଲ ଶ୍ରୀରାମ । ସଫଳ ହେଲା ମୋର ଜନ୍ମ ॥
ତ୍ରିଲୋକ ସ୍ୱାମି ଅଟ ତୁମ୍ଭେ । ସମ୍ପୂର୍ଣ୍ଣ ଚିହ୍ନିଲୁଁ ଯେ ଅମ୍ଭେ ॥
ପ୍ରକୃତି ତୁମ୍ଭର ଅଧୀନ । ବ୍ରହ୍ମାସହିତେ ଦେବଗଣ ॥
ବହୁତ କରିଣ ଯତନ । ନ ପାନ୍ତି ତୁମ୍ଭ ଦରଶନ ॥
ହରାଇ ବୁଦ୍ଧି ଅଜ୍ଞାନତା । ଅବର ଯେ ବିଦ୍ୟମାନତା ॥
ସମସ୍ତ ବିକାର କେବଳ । ଦର୍ଶନ ନ ପାନ୍ତି ତୁମ୍ଭର ॥
ତୁମ୍ଭେ ଯେ ପୂର୍ଣ୍ଣ ନିର୍ବିକାର । ଶାସ୍ତ୍ରେ ଦେଖିଲେ ନାହିଁ ଆର ॥
ତୁମ୍ଭ ସମାନେ ନାହିଁ କେହି । ଅବର କହୁଅଛୁ ମୁହିଁ ॥
ଜଳରେ ଫେଣପୁଞ୍ଜ ସମ । ଯେପରି ଅଗ୍ନି ମଧ୍ୟ ଧୂମ ॥
ସେପରି ମାୟାର ଆଧାର । ହୋଇଛ ପ୍ରଭୁ ମାୟାଧର ॥

ସେ ମାୟା ଆପଣଙ୍କଠାରୁ । ଉତ୍ପତ୍ତି ତୁମ୍ଭର ଆଜ୍ଞାରୁ ।
ସକଳକାର୍ଯ୍ୟ କରି ପାରେ । ଜୀବକୁ ଭୁଲାଏ ଚକ୍ରରେ ॥
ଭବରେ ଜୀବ ମାୟାବୃତ । ଛାଡ଼ି ନ ପାରେ ଭ୍ରମ ତତ୍ତ୍ୱ ॥
କିଛି ନ କରି ବିବେଚନା । ସକଳ ସତ୍ୟ ଯେ ଭାବନା ॥
ମାୟାକୁ ସ୍ୱୀକାର କରେ । ସେ ମାୟା ସର୍ବ ଲକ୍ଷଣରେ ॥
ବ୍ରହ୍ମଜ୍ଞାନୀଙ୍କୁ ଆଚ୍ଛାଦନ । ବସ୍ତୁତ କରେ ନିବାରଣ ॥
ମାୟାରୁ ଦେହ ହୁଏ ଜାତ । ସେ ଦେହ ମଧ୍ୟରେ ବିଦିତ ॥
ଚିଚ୍ଛକ୍ତି ରୂପେ ପ୍ରତିମାରେ । ସଂସାରେ ସର୍ବ ଜୀବ ବୋଲେ ॥
ସକଳ ନିଜେ ବ୍ୟାଖ୍ୟା କିରେ । ସର୍ବଦା ସେ ଚିତ୍ତ ଶକ୍ତିରେ ॥
ସମସ୍ତ ଆଦି ଦେହମନ । ଆବର ପ୍ରାଣ ବୁଦ୍ଧି ପୁଣ ॥
ଧାରଣ କରେ ଅହଂଜ୍ଞାନ । ସମସ୍ତ ମାୟା ଆବରଣ ।
ତବଅବଧି ସେ ସକଳେ । ଆମ୍ଭେ ସେ କର୍ତ୍ତା ଭୋକ୍ତା ବୋଲେ ॥
ସର୍ବଦା ସୁଖ ଦୁଃଖ ଭୋଗ । ମନରେ କରେ ଅନୁରାଗ ॥
ଆତ୍ମାର ନାହିଁକ ସଂସାର । ବୁଦ୍ଧିରେ ହୁଏ ଜ୍ଞାନଭାର ॥
ଉଭୟ ନେଇ ଜୀବଗଣ । ସଂସାରେ ପ୍ରବୃତ୍ତ ହୋଇଣ ॥
ସକଳ ନିର୍ବୋଧତା ଯୋଗ । ନାନାପ୍ରକାରେ କରେ ଭୋଗ ॥
ଜଳ ଅନଳ ମିଳି ଯଥା । ଚିଚ୍ଛକ୍ତି ଯୋଗେ ହୁଏ ତଥା ॥
ହୁଅଇ ମନ ବୃତ୍ତି ଆର । ଯେପର ଜଡ଼ର ପ୍ରକାର ॥
ଜଡ଼ର ଯୋଗେ ମନବୃତ୍ତି । ସର୍ବଦା ସମାନ ହୁଅନ୍ତି ॥
ସର୍ବଦା ସଙ୍ଗ ବିଦ୍ୟମାନ । ସକଳ ହୁଅନ୍ତି ସମାନ ॥
ଯାହାର ସଂଯତଙ୍କମନ । ସେ ଭକ୍ତି ରଖେ ଶ୍ରୀଚରଣ ॥
ସେ ସୁଖ ନ ପାଇଲେ ଭଲେ । ସଂସାର ଦୁଃଖୁ ସେ ନ ତରେ ॥
ନ ପାଏ ମୁକ୍ତି ଲାଭ ସେହୁ । ସାଧୁଙ୍କ ସଙ୍ଗ କରେ ଯହୁଁ ॥
ତାହାରେ ଭକ୍ତିର ଉଦୟ । ଭକ୍ତିଙ୍କ କରେ ସଦାଶ୍ରୟ ॥
ଯଦି ସମସ୍ତ ଜୀବଗଣ । କରନ୍ତି ତବ ଆରାଧନ ॥
ହେ ପ୍ରଭୁ ଏହି ନିଦର୍ଶନ । କ୍ରମରେ କରେ ପଳାୟନ ॥

ସକଳ ମାୟା ହୁଏ କ୍ଷୀଣ । ଦେହରୁ ସଦା ସର୍ବ କ୍ଷଣ ॥
କହୁଛି ଜୀବ ସେ ସମୟେ । ସଦ୍ଗୁରୁ ପ୍ରାପ୍ତ ପୁଣ ହୁଏ ॥
ସମସ୍ତ ସେ ଗୁରୁ ନିକଟ । ତତ୍ତ୍ୱକୁ ବୁଝଇ ପ୍ରକଟ ॥
ଯେ ତତ୍ତ୍ୱମସି ଆଦି କରି । ଅର୍ଥ ଜ୍ଞାନକୁ ଲାଭ କରି ॥
ତୁମ୍ଭର ଜ୍ଞାନକୁ ଧାରଣ । ମୁକ୍ତି ହୁଅନ୍ତି ଜୀବଗଣ ।୧୧୦।
ତୁମ୍ଭର ଦୟା ଅନୁସାରେ । ଭଗବତ୍ ଜ୍ଞାନ ଏ ସଂସାରେ ॥
ଭକ୍ତିବିହୀନ ଯେ ସକଳେ । ମୁକ୍ତି ଜ୍ଞାନକୁ ସୁଖ ଭୋଳେ ॥
ନ [illegible] ତୁମ୍ଭ ଭକ୍ତି ସେହ୍ନେ । କୋଟିଏ କଳ୍ପ କେ ବା କହ୍ନେ ॥
ତୁମ୍ଭର ଯୁଗଳ ଚରଣ । ଭକ୍ତି ମୋ ରହୁ ଅନୁକ୍ଷଣ ॥
ଅବର ତୁମ୍ଭ ଭକ୍ତଗଣ । ସେ ସଙ୍ଗ ସୁଖ ସର୍ବକ୍ଷଣ ॥
ସର୍ବଦା ଆମ୍ଭଙ୍କୁ ଘଟିବ । ମହାମାୟା ଯେ ଦୂର ହେବ ॥
ନିକଟେ ପଶି ନ ପାରିବ । ପ୍ରାର୍ଥନା ରଖନ୍ତୁ ମାଧବ ॥
ପୃଥ୍ୱୀରେ ତୁମ୍ଭ ତତ୍ତ୍ୱଜ୍ଞାନ । ସର୍ବଦା କରେ ଯେ ବ୍ୟାଖ୍ୟାନ ॥
ତୁମ୍ଭର ଭକ୍ତ ସେହି ଜନ । ପବିତ୍ର କରେ ସର୍ବ ଜନ ॥
ସକଳ ପବିତ୍ର ସେ ସ୍ଥାନ । ଯେତେକ ଲୋକ ବିଦ୍ୟମାନ ॥
ଦୂରରେ ରହେ ନିଜ କୁଳ । ଈଶ୍ୱର ଲୋକରେ ବିପୁଳ ॥
ଭକ୍ତି ସମାନ କିଛି ନାହିଁ । ସର୍ବଦା ଭକ୍ତିରେ ରହଇ ।
ଯା ଦ୍ୱାରା ପାଏ ଭବ ଜୀବ । କରୁଣାଆଧାର ମାଧବ ॥
ହେ ବିଶ୍ୱନାଥ ହେ ଅନନ୍ତ । ତୁମ୍ଭର ନାହିଁ ଆଦିଅନ୍ତ ॥
ରାମଚରଣେ ନମସ୍କାର କରୁଛି ମୁହିଁ ବାର ବାର ॥
ସମସ୍ତ ଲୋକ କରି କ୍ଷୟ । ପାପ ମୁଁ କରିଛି ସଞ୍ଚୟ ॥
କଟଣ ଶର ସଂଯୋଜନ । ଅଚିରେ କରନ୍ତୁ ଧ୍ୱଂସନ ॥
ଶ୍ରୀରାମ ଯୁଗଳ ପଦ୍ମର । କରୁଛି ମୁହିଁ ନମସ୍କାର ॥
କରୁଣାମୟ ସୀତାଈଶ । ଭାର୍ଗବ ସ୍ତବରେ ସନ୍ତୋଷ ।
କହିଲେ ବ୍ରହ୍ମନ୍ ଶୁଣ ତୁମ୍ଭେ । ସନ୍ତୁଷ୍ଟ ହୋଇଅଛୁଁ ଅମ୍ଭେ ॥

ଯାହା ତୁମ୍ଭର ଅଭିଳାଷ । ସାକ୍ଷାତେ କରିବ ପ୍ରକାଶ ॥
କରିବୁଁ କାମନା ପୂରଣ । ଭାର୍ଗବ ଶୁଣ ଏ ବଚନ ॥
ପ୍ରଫୁଲ୍ଲ ଆନନ୍ଦରେ ମନ । ରାମଙ୍କୁ କହିଲେ ବଚନ ॥
ହେ ରାମ ଶ୍ରୀମଧୁସୂଦନ । ଯାହା କରିବି ନିବେଦନ ॥
ଯଦତ ମାୟାହୀନ ଜନ । ଏ ବର କରନ୍ତୁ ପ୍ରଦାନ ॥
ଭକ୍ତି ଯେପରି ବର୍ତ୍ତମାନେ । ସର୍ବଦା ରହିବ ଚରଣେ ॥
ତୁମ୍ଭର ଭକ୍ତଗଣ ସଙ୍ଗେ । ସର୍ବଦା ବାସକରି ରଙ୍ଗେ ॥
ଏ ଭିନ୍ନ ନାହିଁ ମୋ ବାସନା । ଆବର କହୁଅଛି ସିନା ॥
ଆମ୍ଭର କୃତସ୍ତବ ଏହି । ପଠକରିବେ ନର ଯେହି ॥
ଯଦି ତୁମ୍ଭର ଭକ୍ତିହୀନ । ସଦ୍ଗତ ପାଇବେ ସେକ୍ଷଣ ॥
ଶେଷକାଳରେ ଜ୍ଞାନଲଭ । ସ୍ମୃତି ତୁମ୍ଭର ସେ ପାଇବ ॥
ସତ୍କାର କରି ରଘୁମଣି । ସଭ୍ୟରେ ହେଉ ସେ ବଖାଣି ॥
ଭାର୍ଗବ ଦଣ୍ଡବତ ପରେ । ଶ୍ରୀରାମେ ପ୍ରଦକ୍ଷିଣ କରେ ॥
ତତ୍ପରେ କରିଲେ ଗମନ । ମହେନ୍ଦ୍ର ପର୍ବତ ଆଶ୍ରମ ॥
ଗମନ ପରେ ଦଶରଥ । ଶ୍ରୀରାମ ଅଛି ତ ଜୀବନ୍ତ ॥
ନୟନୁ ଗଳେ ହର୍ଷବାରି । ପୁତ୍ରଙ୍କୁ ଆଲିଙ୍ଗନ କରି ॥
ଏପରି କରି ବାର ବାର । ନିରୁଦ୍ବେଗରେ ହେଲେ ସ୍ଥିର ॥
ହୋଇଣ ଅନନ୍ଦିତ ମନ । ଅଯୋଧ୍ୟା ପ୍ରବେଶ ତତ୍କ୍ଷଣ ॥
ଦେବତା ତୁଲ୍ୟ ଶୃଙ୍ଗାରଇ । ସ୍ୱ ସ୍ୱ ଦୟିତା ସଙ୍ଗେ ନେଇ ॥
ବିହାର କରି ଅନୁକ୍ଷଣ । ଯେପରି ବୈକୁଣ୍ଠ ଭୁବନ ॥
ଲକ୍ଷ୍ମୀଙ୍କ ସଙ୍ଗେ ନାରାୟଣ । ଶ୍ରୀରାମ ଜାନକୀ ତେସନ ॥
କେଳି କରନ୍ତି ନାନାରଙ୍ଗେ । ବିହରି ସୀତାଙ୍କର ସଙ୍ଗେ ॥
ତତ୍ପରେ ପିତାମାତା ମନ । ଆନନ୍ଦ ସାଗରେ ମଗନ ॥
କୈକେୟୀ ଭାଇ ଯୁଧାଜିତ । ଅଯୋଧ୍ୟା ହେଲେ ଉପସ୍ଥିତ ॥
ଭରତ ଯିବେ ମାମୁଘର । କହିଲେ ରାଜାଙ୍କ ଛାମୁର ॥

ନୃପତିବର ଦଶରଥ । ସଞ୍ଚାର କରନ୍ତେ ଭରତ ।
ଉପୁରେ ଭରତ ଶତ୍ରୁଘ୍ନ । ମାତୁଳାଗାରକୁ ପ୍ରେରଣ ।
ଅବର ଶ୍ରୀରାମ ଜନନୀ । ଶଚୀ ମହେନ୍ଦ୍ର ଶୋଭା ଘେନି ॥
ଅଦତ ପ୍ରାପ୍ତ ଶୋଭା ଦଶେ । ଯହିଁ ଶ୍ରୀରାମ ସୀତା ମିଶେ ॥
ଯେ ମୂର୍ତ୍ତି ଗର୍ଭ ନରମନ । ଆନନ୍ଦେ ହୁଏ ପରିପୂର୍ଣ୍ଣ ॥
ଜଗତେ ଗୁଣ ପ୍ରତିଷ୍ଠିତ । ବଦତ କବିଙ୍କର ଶାସ୍ତ୍ର ॥
ଯାହାର କୀର୍ତ୍ତି ଶୋଭା ପାଏ । ଖଟନ୍ତ ଶକ୍ତି ଦାସୀ ପ୍ରାୟେ ।
ମାର୍ଦ୍ଦ୍ଦଂ ମୋହିତ ଆବରଣ । ସର୍ବଦା ସେହି ଉନ୍ମୋଚନ ॥
ଯାର ମହିମା ଅନ୍ତ ନାହିଁ । ସକଳ ଜୀବରେ ରମଇ ॥
ଯେ ମାୟା ରାମ ଅନୁଗାମି । ସେ ମାୟା ସୀତା ରୂପେ କହି ॥
ଶ୍ରୀରାମ ସଙ୍ଗତେ ବିହାର । କରନ୍ତି ନରଙ୍କ ପ୍ରକାର ॥
ପ୍ରାକୃତ ବନ୍ଧେ ରାମାୟଣ । ଶାମଚରଣ ଭାବେ ମନ ॥

ଇତି ଶ୍ରୀବ୍ରହ୍ମାଣ୍ଡପୁରାଣେ ଉତ୍ତରଖଣ୍ଡେ ଶ୍ରୀମଦଧ୍ୟାତ୍ମରାମାୟଣେ ଉମାମହେଶ୍ୱର ସମ୍ବାଦେ ବାଳକାଣ୍ଡେ ନାମ ସପ୍ତମୋଽଧ୍ୟାୟଃ ।

ଇତି ବାଳକାଣ୍ଡେ ସମାପ୍ତ ।

—୦ଃ*ଃ୦—

Printed by H.K. Das, Chandrodaya Press, Cuttack